# ଭକ୍ତି ଗୀତିକା



ଅଧ୍ୟାପକ ରବୀନ୍ଦ୍ର କୁମାର ମହାପାତ୍ର
ତର୍କ ଓ ଦର୍ଶନ ବିଭାଗ
ଢେଙ୍କାନାଳ ମହାବିଦ୍ୟାଳୟ, ଢେଙ୍କାନାଳ

Digitized by srujanika@gmail.com

# ଭକ୍ତି ଗୀତିକା

ଲେଖକ :
ଅଧ୍ୟାପକ ରବୀନ୍ଦ୍ର କୁମାର ମହାପାତ୍ର
ପ୍ରକାଶିକା :
ଶ୍ରୀମତୀ ଶୈଳବାଳା ମହାପାତ୍ର
କାଠଗଡ଼ା, ଢେଙ୍କାନାଳ
ଫୋନ - ୩୨୧୪୦
*ମୁଦ୍ରଣ :*
ମାହେଶ୍ୱରୀ ପ୍ରେସ,
ରଥଗଡ଼ା, ଢେଙ୍କାନାଳ, ଫୋନ - ୩୨୩୯୦
*ପ୍ରଚ୍ଛଦ ଓ ଅନ୍ତର୍ପତ୍ର :*
ଚନ୍ଦ୍ରଶେଖର ପ୍ରେସ୍, କୁଞ୍ଜକାନ୍ତ, ଢେଙ୍କାନାଳ, ଫୋନ - ୩୪୭୮୧

ପ୍ରଥମ ପ୍ରକାଶ : ତା୧୮.୫.୨୦୦୦, ବୁଦ୍ଧ ପୂର୍ଣ୍ଣିମା
ମୂଲ୍ୟ : ବାରଟଙ୍କା ମାତ୍ର

**Bhakti Geetika**
Written By :
**Prof. Rabindra Ku. Mohapatra**
Published By :
**Smt. Sailabala Mohapatra**
Kathagada, Dhenkanal, Ph-32140
Printed at :
**Maheswari Press**
Rathagada, Dhenkanal, Ph-32390
Cover & Inner :
**Chandra Sekhar Press,**
Kunjakanta, Dhenkanal, Ph-34781
First Edition :
Price :**Twleve Rupees only**

*Digitized by srujanika@gmail.com*




ଅଜ୍ଞାନ ତମସା ତୁଟାଇ ସହସା

ଜ୍ଞାନର ପ୍ରଦୀପ ଜାଳି

ଭରି ସଦଭାବ ପୂଜ୍ୟ ଗୁରୁଦେବ

ଦେଲ ତାପତ୍ରୟ ଟାଳି ।୧।

ଅଜର ଅକ୍ଷର ତୁମେ ବିଶ୍ୱାଧାର

ଗୁରୁଭାବେ ହୋଇ ଉଭା

ଶରୀର ମୃଣ୍ମୟ ହେଲେହେଁ ଚିନ୍ମୟ

ସତ୍ତା ରାଜେ ସ୍ୱୟଂପ୍ରଭା ।୨।

ମେଷପଲ୍ଲେ ମିଳି ଭ୍ରମେ ଘୂରୁଥିଲି

ଭାବି ମୁଁ ମେଷ ଶାବକ

ସ୍ୱରୂପକୁ ଭୁଲି ଭୟେ ଧାଉଁଥିଲି

ଶୁଣି ପଶୁରାଜ ଡାକ ।୩।

ଆକ୍ରମଣ ଛଳେ ଧାଇଁଲ ପଛରେ

ଆଣିଲ ସାଥୀରେ ଧରି

ଜଳ ପ୍ରତିବିମ୍ବେ ଚିହ୍ନାଇଲ୍ ତୁମେ

ମୁଁ ଯେ ସିଂହ ଶିଶୁ ବୋଲି ।୪।

ଅହେତୁକୀ କୃପା ପ୍ରତିଦାନେ ମୁଁ ବା

କି ଦେବି ତୁମକୁ ଗୁରୁ

ନଇବେଦ୍ୟ ଏକା ମୋ **ଭକ୍ତି ଗୀତିକା**

ଆହେ ବାଞ୍ଛା କଳ୍ପତରୁ ।୫।

କୃପା ଭିକ୍ଷୁ
ରବି

Digitized by srujanika@gmail.com

# ଅଭିମତ

ଯା' ହୃଦେ ଯେପରି
ଭାବ ଭରି ଅଛି
ସେପରି ଫୁଟଇ ଭାଷା,
ସେ ଭାଷାର ଛନ୍ଦେ
ଜୀବନ ବିଳସେ
ଝଲସାଇ ଦିବ୍ୟ-ଆଶା ।
ସେ ଆଶା ସଞ୍ଚାରି
ମଣିଷ ଦିଅଇ
ମଣିଷକୁ ନୂଆ ଛବି,
ଛବିଳ ବିଶ୍ୱରେ
କେ ନୁହେଁ ନିଃସ୍ୱରେ
ସଭିଏଁ ତ ଅନୁଭବୀ ।
**ଭକ୍ତି ଗୀତିକାରେ**
ଏଇ ମୋ ବିଚାରେ
ସେଇ ଅନୁଭବ ଧାରା,
ରବି ଦୀପ୍ତକରେ
ଚନ୍ଦ୍ରମା ପ୍ରକାଶେ
ଯେସନେ ଜୋଛନା ପରା ।

ଗୁଡ଼ିଆନାଳୀ
ଢେଙ୍କାନାଳ
ତା ୧୫.୫.୨୦୦୦

**ଅଧ୍ୟାପକ ମନୋରଞ୍ଜନ ଦାସ**
ସଭାପତି, ଉତ୍କଳ ଏକାଡ଼େମୀ

*Digitized by srujanika@gmail.com*

# ଭକ୍ତି ଗୀତିକା

## (ଏକ)

ନୁହେଁ ମୁହିଁ ବସୁଦେବ
ନୁହେଁ ମୁହିଁ ନନ୍ଦ
କୋଟିଜନ୍ମ ତପବଳେ
ପାଇବି ଗୋବିନ୍ଦ
ଅବାଞ୍ଛିତ ବାମନ ମୁଁ
ଝୁରେ ତୋତେ ଆଜନମୁଁ
ସତେ କି ପାଇବି କୋଳେ
ତୋତେ କଳାଗୃନ୍ଦ ।୦।
ତୋପରି ପୁଅ ମୁଁ ଥରେ
ପାଇଲେ ମୋ ହାତେ
କୋଳେଇ ଫେଡ଼ିବି ଆଖି
ଲୁହ ନିତି କେତେ
ଜୀବନର ତାପମାନ
ଭୁଲିବିରେ ଜୀବଧନ
ଅବିରତ ଚୁମି ତୋର
ମୁଖ ଅରବିନ୍ଦ ।୧।
ଦେବିନି ମୁଁ ତୋତେ କେବେ
ପୁତନାର କୋଳେ
ଡେଇଁବାକୁ ଦେବିନି ମୁଁ
କାଳନ୍ଦୀର ଜଳେ



Digitized by srujanika@gmail.com

ଶକଟା, ବକା, ଧେନୁକା,

ଇନ୍ଦ୍ର, ତୃଣାବର୍ତ୍ତ ଶଙ୍କା

ରକ୍ଷିବାକୁ ତୋ ପାଇଁରେ

ମାଧବ ମୁକୁନ୍ଦ ।୨।

ଦୁନିଆଁ ବନ୍ଦୀରେ ଛନ୍ଦେ

ମାୟାର ଶିକୁଳି

ବେଗେ କାଳ କଂସରଙ୍କୁ

ଯାତନା କୋରଡ଼ି

କୋଟିସିନ୍ଧୁ ଜଳସମ

କରୁଣା ତୋର ଅସୀମ

ଭବ ବନ୍ଧନ ଫେଡ଼ିଦେ

ମୁକ୍ତିର ଆନନ୍ଦ ।୩।

—✳—

(ଦୁଇ)

ବଂଶୀ ଫୁଙ୍କାରେ, ଗିରିଟେକାରେ

କରନା ପର ଭବ ରଙ୍କାରେ

ମୁହିଁ ତୋହର ଆଶ୍ରିତ

ତୁ ଯେବେ କରୁ ବଂଚିତ

ପାରିବିକି ସହି ଏତେ

ଜୀବନର ଧକ୍କାରେ ।୦।

ତୋତେ ମୁଁ ପାଇବି ବୋଲି

ତେଜିଲି ମୋ ଭାଇ

ଲଙ୍କାରେ ମୁଁ ବିଭୀଷଣ

ହେଲି ଭ୍ରାତୃଦ୍ରୋହୀ

ମୁହିଁ ତୋହର ଆଶ୍ରିତ··· (୧)

ତୋ ପଦ ଲାଗି ତେଜିଲି

ପିତା ହିରଣ୍ୟକ



Digitized by srujanika@gmail.com

ପିତୃହନ୍ତା ପ୍ରହଲ୍ଲାଦ
ମୁହିଁରେ ପଦ୍ମାକ୍ଷ
ମୁହିଁ ତୋହର ଆଶ୍ରିତ··· (୨)

ତୋ ସାନ୍ନଧ ଲଗି ମୁହିଁ
ତେଜିଲି ମୋ ପତି
ଗୋପେ ରହିଲି ରାଧିକା
କଳଙ୍କି ଅସତୀ
ମୁହିଁ ତୋହର ଆଶ୍ରିତ··· (୩)

ତୋ ପଦ ଲଗି କୈକେୟୀ
ମାତାଙ୍କୁ ତେଜିଲି
ଅଧମ ଭରତ ମୁହିଁ
ତୋ ଆଶ୍ରା ବାଞ୍ଛିଲି
ମୁହିଁ ତୋହର ଆଶ୍ରିତ··· (୪)

ତୋ ପଦ ଲଗି ତେଜିଲି
ଗୁରୁ ଶୁକ୍ରାଚାର୍ଯ୍ୟ
ବଳୀ ମୁହିଁ ଶିରଦେଲି
ତୋତେ ଚତୁର୍ଭୁଜ
ମୁହିଁ ତୋହର ଆଶ୍ରିତ··· (୫)

—*—

## ( ତିନି )

ଯାଉ ଯଦି ଯାଇ ତୁହି
ଶ୍ରୀନୀଳାଚଳ
ଦେଖା ଟିକେ କରିବୁ ମୋ
କଳାଠାକୁର



Digitized by srujanika@gmail.com

କହିବୁ ବଂଧୁଙ୍କୁ ମୋର
ଭକତ ଝୁରେ ତୁମର
ଦରଶନ ଲାଗି ତା'ରେ
ନାହିଁ କି ଡ଼ୋର ।୦।

କହିଛି ନେବାକୁ ତୁମ
ଦାଣ୍ଡର ଧୂଳ
ଭୁଲିବ ବରଷ ତାପ
ମୁଣ୍ଡରେ ବୋଳ
ଗୁଣ୍ଡିଚ୍ଚ ଯାତରା ବେଳେ
ଭକତ ସାଆନ୍ତ ମେଳେ
ଦାଣ୍ଡଧୂଳ ପାଇଥିବ
ପରଶ ତୋର ।୧।

ପୁଣି କହିଛି ନେବାକୁ
କୈବଲ୍ୟ କଣା
ତୁଣ୍ଡେ ଦେଇ ମୁକ୍ତପଥ
ନ ହେବ ବଣା
ଶବଶ୍ରୀ ବନ୍ଧୁରେ ଦେଇ
ବଂଧୁ ମହାନ୍ତ ଭୁଞ୍ଜାଇ
କଳି କଳୁଷରୁ ଭକ୍ତ
କରୁ ଉଦ୍ଧାର ।୨।

ଶେଷେ କହିଛି ନେବାକୁ
ତୁଳସୀ ମାଳ
ଜପିବ ତୋ ନାମ ନିତ
ଗୁଳି ଅଙ୍ଗୁଳି
ପିଣ୍ଡୁ ଜୀବ ଗଲେ ତା'ର
କରିବୁନ ହତାଦର
ନେଇଯିବୁ ତାକୁ ନିତ୍ୟ
ରାସ ଆସର ।୩।

—*—



Digitized by srujanika@gmail.com

( ଗୁର )

କାହ୍ନାରେ······କାହ୍ନାରେ······

ବଂଶୀକୁ କଲୁ ନଜର
ମୁଁ ହୋଇଲି ପର
ପାଇଲା ସାନିଧ୍ୟ ତୋର
ଚୁମିଲା ଅଧର
ବିଷଯ୍ୟାକୁ ବିଷ ମଣି
ତୋ ଅମିୟ ଗୁଣଗୁଣି
ଦାଣ୍ଡରେ ମହତ ସାର
ହେଲ ନାରଖାର ।୦।

ତୋ ଅଙ୍ଗ ପରଶ ପାଇ
ଅରଜିଲା ପୁଣ୍ୟ
କରେ, କଟିରେ, ଅଧରେ
ରହି ହେଲା ଧନ୍ୟ
ମୋର କିବା ଦୋଷ ସତେ
କଲୁ ତୁ ଅନ୍ତର
ବଂଶୀକୁ କଲୁ ନଜର····· ।୧।

ତୋ କାଉଁରି ପରଶର
ଯାଦୁକରୀ ମୋହ
କପି, ଗୋପୀ, ଋଷି ମନେ
ଭରିଦେଲା କୋହ
ସ୍ଥଯ୍ୟାକୁ କରେ କି କାଯ୍ୟା
କେବେ ହଡ଼ାଦର
ବଂଶୀକୁ କଲୁ ନଜର····· ।୨।

ତୁ କହୁ ସେ ଫମ୍ପା ବଂଶୀ
ତୋର ଆପଣାର
ତୋ ସେବାରେ ଅହଙ୍କାର
ଶୂନ୍ୟ ତା' ଅନ୍ତର
ପ୍ରୀତିମୟ ସୁରେ ତୋକୁ
ମୂର୍ଚ୍ଛନା ମଧୁର
ବଂଶୀକୁ କଲୁ ନଜର······।୩।

—*—



Digitized by srujanika@gmail.com

( ପାଞ୍ଚ )

ପତ୍ର, ଫୁଲ, ଫଳ, ଜଳ
ଦେବ ମୁଁ ତୋତେ
ତା'ଠାରୁ ଅଧିକ କିଛି
ନାହିଁ ପାଖରେ ।୧।

ହାତ ଦୁଇ ପତ୍ର ରୂପେ
ଦେବ ତୋତେ ବଢ଼ାଇ
ଆରତେ ଡ଼ାକଲା ପ୍ରାପ୍ତେ
ସବୁ ସମର୍ପି ଦେଇ
ତୁଚ୍ଛ ଧନ ସନମାନ
ଥିଲେ ତୁ ସାଥେ ।୨।

ହୃଦୟ ଫୁଲକୁ ମୁହିଁ
ଅତି ଯତନେ ତୋଳି
କର ପଲ୍ଲବେ ଥାପିବ
ପୁଣ୍ୟ ସୁରଭି ଢାଳି
ପୂତ ନଇବେଦ୍ୟ ମୋର
ତୋ ପ୍ରୀତି ଅର୍ଥେ ।୨।

ବାଢ଼ିବ କରମ ଫଳ
ମନ ନ କର ଉଣା
ସର୍ବଜନହିତେ ଦେବ
ନ ଲୋଡ଼ ମୋ ପାଉଣା
ନିଷ୍କାମ କର୍ମ ସମ୍ପାଦ
ସାର ଜଗତେ ।୩।

ଝରବ ନୟନୁ ଜଳ
ହେବାଲାଗି ମଣୋହି
କୃତଜ୍ଞତା ଅଶ୍ରୁ ଝରି
ତୋର କରୁଣା ପାଇଁ
ଏତକ ଭେଟି ତୋ ଲାଗି
ପସାଣ ମିତେ ।୪।

—*—

 ରବୀନ୍ଦ୍ର କୁମାର ମହାପାତ୍ର

Digitized by srujanika@gmail.com

## (ଛଅ)

ରେ ମନବାୟୁ,
　　କଞ୍ଜ ନୟନକୁ ଥରେ ଗୁହଁ । । (ଘୋଷା)
ହରକ ସଂସାର ତାପ
　　ଫେଡ଼ବ ସକଳ ପାପ
ଭରବ ସବୁର ଆଶା
　　ଫେଡ଼ବ ଶମନ ଦଶା
ଦୁଃଖ ହାସ୍ତ......
　　ଶରଣ ପଞ୍ଜର ତଉବାହା (୧)
ମୁଖ ତା' ଶରଦଶଶୀ
　　ଅଧରେ ମୋହନ ବଂଶୀ
ମସ୍ତକେ ଚନ୍ଦ୍ରକାଚୂଳ
　　କର୍ଣ୍ଣେ ମକର କୁଣ୍ଡଳ
ବନମାଳୀ......
　　ବନଫୁଲମାଳେ ଶୋହେ ହିଆ (୨)
ଘର ତା'ର ରତ୍ନାକର
　　ବଇଭବେ ଭରପୂର
ଘରଣୀ ଐଶ୍ବର୍ଯ୍ୟଗଣୀ
　　ରଞ୍ଜେ ମନ ବୀଣାପାଣି
ବୈକୁଣ୍ଠଶ୍ବର .....
　　ଅନନ୍ତ ଶୟନ ଶାନ୍ତକାୟା (୩)
ଶୁଣିଲେ ମୂରଲୀ ସ୍ବନ
　　ପୁଲକେ ନାଚବ ମନ
କୋଟି କାମ ଜିଣି ଶୋଭା
　　ରୂପକାନ୍ତ ମନଲୋଭା
ଚକ୍ରଧାରୀ......
　　ଛେଦ ଦେବ ତୋର ମୋହମାୟା (୪)

—※—



Digitized by srujanika@gmail.com

## (ଗୀତ)

ଦୟା ଥିଲେ କରିବୁରେ
ଯଶୋଦା ନନ୍ଦନ
ଯଶ ଗୁଣ ଗାଇ ତୋର
ଯିବ ଏ ଜୀବନ
ହେବୁ କି କୁଣିଆ ଥରେ
ମୋର ଏ ଭଙ୍ଗା କୁଟୀରେ
ଜୀବନ ମଣିବି ଧନ୍ୟ
ହେ ମଧୁସୂଦନ । • ।

ପାଶବନ୍ଧ ଦେଇ ତୋତେ
ପକ୍ୱଶାଳି ଅନ୍ନ
କ୍ଷୀର ସର ନବନୀତ
ସ୍ୱାଦିଷ୍ଟ ବ୍ୟଞ୍ଜନ
ଶାଗ ପଖାଳକୁ ମୋର
ଖାଇବ ବିଦୁରର ଘର
ସବଗେ କରିବୁ ଥରେ
ମୋ ଘରେ ଭୋଜନ । ୧ ।

ନାହିଁ ତୁଳ ତଳ୍ପ ଗଜ-
ଦନ୍ତର ପଲଙ୍କ
ନାହିଁ ଅଇଶ୍ୱର୍ଯ୍ୟ ଲକ୍ଷ୍ମୀ
ଶେଷ ନାଗ ଅଙ୍କ
ହୃଦ ପଲଙ୍କରେ ରଖି
ଶ୍ରୀପଦ ଦେବୁ ବଢାଇ
ଯାଚିବୁ ଚରଣାମୃତ
ସଜୀବ ଲୋଚନ । ୨ ।

—*—

୮ ରବୀନ୍ଦ୍ର କୁମାର ମହାପାତ୍ର

Digitized by srujanika@gmail.com

(ଆଠ)

ଦେଖ ସଖି ବଡ଼ଦାଣ୍ଡେ
କିଏ ଆସଇ
ସିଂହ ଦ୍ୱାରେ କା'ର କଳା-
ମୁଖ ଦିଶଇ ।୧।
ନୟନେ ବାଙ୍କ ଚାହାଣୀ
ନବ ଯଉବନ ଠାଣି
ଭୁବନ ମୋହନ କାନ୍ତି
ଟାଳେ ଯୋଗୀ ଜନ ମତି
କୁଳ କାମିନୀ ମାନସ
ଦମ୍ଭ ହରଇ ।୨।
ମଥାରେ ଦୟଣା ଚୂଳ
ଗଳାରେ ତୁଳସୀ ମାଳ
ରଙ୍ଗ ଅଧରରେ ହସ
କସ୍ତୁରୀ ଚନ୍ଦନେ ବାସ
ଟାହିଆ ହଲଇ ନାଚି
ମନ କିଣଇ ।୩।
ପାହୁଣ୍ଡ ଗୋଟି ପକାଏ
କା' ଲାଗି ଅଟକ ରହେ
ମନେ ମନେ ଖୋଜୁଥାଏ
ନ ଜାଣିଲି ପର ଗୃହେଁ
ବନ୍ଧୁ ଦାସ ସାଲବେଗ
ଦର୍ଶନ ପାଇଁ ।୪।
କାମନା କଳପ ତରୁ
ଅପାର ମହିମା ମେରୁ
ଅପଲକ ନେତ୍ରେ ଚାହିଁ
ଜଗଜ୍ଜନ ମନ ମୋହି
ଜନମ ଜନମ ଦୁଃଖ
ନାଏ ହରଇ ।୫।

—*—



Digitized by srujanika@gmail.com

## (ନଅ)

କି ଧନ ମାଗିବି ତୁଠ
ପଗ୍ୱଣ ଧନ
କି ମନ ମାଗିବି ତୁଠ
ମନମୋହନ
ଆରେ ଯଦୁ ନନ୍ଦନ
ମଧୁସୂଦନ, ହୃଦଚନ୍ଦନ ।୦।

କି ସାଥୀ ମାଗିବି ତୁଠ
ଅନ୍ଧ ଲଉଡ଼ି
କି ଜ୍ୟୋତି ମାଗିବି ତୁଠ
ନେତ୍ର ଦିହୁଡ଼ି
ଆରେ ନନ୍ଦ ନନ୍ଦନ
ବଂଶୀ ବଦନ, ରଙ୍କ ରତନ ।୧।

କି ମାନ ମାଗିବି ତୁଠ
ମାନ ଭଞ୍ଜନ
କି ଜ୍ଞାନ ମାଗିବି ତୁଠ
ପରମ ଜ୍ଞାନ
ଆରେ ପୀତ ବସନ
ଜଗମୋହନ, ପଦ୍ମନୟନ ।୨।

କି ଭକ୍ତି ମାଗିବି ତୁଠ
ଭକତ ବନ୍ଧୁ
କି ମୁକ୍ତି ମାଗିବି ତୁଠ'
ମୁକତି ସିନ୍ଧୁ
ଆରେ ବ୍ରଜମୋହନ
ଗୋପ ରଞ୍ଜନ, ନେତ୍ର ଅଞ୍ଜନ ।୩।



Digitized by srujanika@gmail.com

କ ଶାନ୍ତି ମାଗିବ ତୁଚ୍ଛ
ଶାନ୍ତି ପସରା
କ ପ୍ରୀତି ମାଗିବ ତୁଚ୍ଛ
ପୀରତି ଧାରା
ଆରେ ଯଶୋଦା ପ୍ରାଣ
ରୁକ୍ମିଣୀ ଧନ, ଅଶ୍ରୁମୋଚନ । ୪ ।

—*—

(ଦଶ)

କାଳିଆ ମୂରତିରେ
ଅଗତିର ଗତିରେ
ଯଚେ କି ନ ବୁଝୁ ମୋର
ଭକତି ଆରତିରେ ।୧।
ନ ଶୁଣୁ ଡାକ ମୋହର
ଭୁଲିବିନ ତୋ ପଯୂର
ଝୁରୁଥିବି ନିରନ୍ତର
ଜଣାଇ ପ୍ରଣତି ରେ ।୨।
ମିଳ କନ୍ଦର ବିହାରୀ
ଗୋବର୍ଦ୍ଧନ ଗିରିଧାରୀ
କଳୁଷ ବିନାଶକାରୀ
ଦେଏନା କରତିରେ ।୨।
ଭାଇ ଭଉଣୀ ସଙ୍ଗତେ
ପୂଜାପାଉ ତୁ ନିରତେ
ଭକତ ଜନଙ୍କ ହିତେ
ଖଟାଉ ଶକତିରେ ।୩।
ଅଳୀକ ମାୟା ସଂସାର
ତୋ ବିନୁ ଜୀବ ଅସାର
ଆଶିଷ ରସ ଆଧାର
ନକର ବିରତି ରେ ।୪।

—*—



Digitized by srujanika@gmail.com

## (ଏଗାର)

ବାଇଶି ପାହାଚ ତଳେ          ଅକିଞ୍ଚନ ମୁଁ ଆକୁଳେ
ଝୁରିମରେ ଡାକ ଡାକ ତୋତେ
କହିଲୁନି ପଦେ 'ଆହା'          କାହିଁକରେ ତଉବାହା
ସତେ କି ପର କରିଲୁ ମୋତେ
ଦୁଃଖ ପାସୋରରେ·····
ତୁହି ମୋର ଅନ୍ଧର ଲଉଡ଼          ଗରବର ରତ୍ନଥାଳୀ
ଅପୂର୍ବୀ ସଂଖାଳୀ (୧)

ଦେଖିଲେ ତୋ ଚକାଆଖି          ମନ କାହିଁ ଯାଏ ଲଖି
ଜାଣୁ ଅବା ସତେକି ମନ୍ତର
ତୋ କାଳିଆ ରୂପ ଚାହିଁ          ଗୁନ୍ଥ ମୋ ଫାଟି ଉଠଇ
ଆଖିରୁ ଝରଇ ଲୁହଧାର
ଦୁଃଖୀର ଧନରେ
ତୁହି ମୋର ସକଳ ସମ୍ପତ୍ତି          ତୁହି ଅଗତିର ଗତି
ମୋ ନୟନ ଜ୍ୟୋତି (୨)

ମନ ମୋ ହୁଏ ନରତେ          ପାଇଲେ ମୁଁ ଥରେ ତୋତେ
କୋଳେଇ ଫେଡ଼ନ୍ତ ଆଖିମାର
ଛୁଡ଼ିବନ ତୋତେ ତଳେ          ମୋ ଛତଲ୍ ଲୁହେ କାଳେ
ବୁଡ଼ି ମୋତୁ ହୋଇଯିବୁ ପର
ରଙ୍କ ରତନରେ ·····
ତୁହି ମୋର କଳୁଷ ଖଣ୍ଡନ          ସନ୍ତପ୍ତ ହୃଦ ଚନ୍ଦନ
ମୋ ଶିର ମଣ୍ଡନ (୩)

—*—



Digitized by srujanika@gmail.com

## (ବାର)

କିଏ କହେ ତୁମେ ଅନ୍ତରଯାମୀ
କେ କହେ ଦୁଃଖ ଯାସୋର
କିଏ କହେ ତୁମେ ଦୀନଜନ ବନ୍ଧୁ
ଦୁଃଖୀର ନିଧି ଯସର ।୧।

ଦୁନିଆଁ ମରୁର ତାତଲ ବାଲିରେ
କ୍ଲାନ୍ତ ପଥିକ ମୁହିଁ
ତିର ତୃଷିତ ମୁଁ ବହୁ ପଥଯାତ୍ରୀ
ରହା ସାହା ଯାଏ ନାହିଁ
'ଆହା' ପଦଟିଏ ଉଚାରିଲ ନାହିଁ
କଷିଲ ଜୀବନ ସାର ।୨।

ଉଛୁଳା ନଦୀର କଳା ତଅଁରରେ
ଭଉଁରି ଖାଏ ମୋ ନାଆ
ଆକାଶେ ବିଜୁଳି ବତାସିଆ ଝଡ
ବଉଦ କଳାହାଣ୍ଡିଆ
କାତ ଆହୁଲି ମୋ ଭସାଇ ଦେଇଛି
ଟାଣ ବରଷା ଅସର ।୨।

ଘୋର ଦାବାନଳୁ ପ୍ରାଣ ନେଇ ଧାଏଁ
ମିରଗ ଶାବକଟିଏ
ହିଂସ୍ର ଜାନୁଆର ବ୍ୟାଧ ସଶସ୍ତ୍ର
କବଳୁ କି ରକ୍ଷାପାଏ
ରହା ହୀନ ଏହି ଅସହାୟ ଜୀବେ
ତୁମେ କି ନଯ୍ନ ତାର ।୩।

—*—



Digitized by srujanika@gmail.com

## (ତେର)

ତୋତେ ମୁହିଁ କି ନ ଜାଣେରେ କାଳିଆ
ତୋତେ ମୁହିଁ କି ନଜାଣେ
ସଂସାରେ କେ ଅଛି ବାଂଧବ ଜଣେରେ
ତୋ ଠୁଁ ବଡ଼ ବଂଧୁପଣେ ।୦।

ଭବକୁ ନିକଟ ଅଭବକୁ ଦୂର
ଏହି ତୋ ଭକ୍ତି ନିୟମ
ଗରବ ଗଞ୍ଜନ ନାମଟି ତୋହର
ଅହମିକାର ତୁ ଯମ
ପ୍ରମାଣ କରିଛୁ ଏହି ବାର୍ତ୍ତା ତୋର
ଦାସ ନଡ଼ିଆ ଗ୍ରହଣେ ।୧।

ଦୂରେ ଚରିଥାନ୍ତି ମୃଗେ ଚରିଯାନ୍ତି
ନିରତେ ନାମ ସୁମରି
ମୃଗା ମୃଗୁଣୀ ସେ ଆତଙ୍କେ ଜପିଲା
ହୃଦ ମନ ଦୃଢ଼ କରି
ଅଶରଣେ ସାହା ହୋଇଥିଲୁ ପରା
ବ୍ୟାଧ କବଳୁ ତାରଣେ ।୨।

ଅଗତିର ଗତି ଅନାଥର ନାଥ
ନୀଳ ଗିରି ବର ସାଇଁ
ସିଂହ ଶକ୍ତି ନେଇ ଦୁଷ୍ଟଙ୍କୁ ଦଳିଛୁ
ଅରକ୍ଷ ତାରିବା ପାଇଁ
ଦୁଃଖିନୀ ଦ୍ରୌପଦୀ ମହତ ରଖିଛୁ
ଅଙ୍ଗୁ ବସନ ହରଣେ ।୩।

—※—



Digitized by srujanika@gmail.com

(ଚଉଦ)

ଗଣ୍ଠିର ଧନ ତୁହି ମୋ
ରଙ୍କ ରତନ
ତୋତେ ଖୋଜ ବୁଲେ ନିତ
ଚକାନୟନ
ତୋର ଦରଶନ ପାଇଁ
ଆତୁରେ ଆକୁଳେ ଗୁହିଁ
ତଥାପି ପାଏନ କ୍ଷଣେ
ତୋ ଦରଶନ ।।୦।
ତୋ ପରି ସମ୍ପଦ ଆଉ
ଜଗତରେ ମିଳେନା
ତୋ ପରି ବାନ୍ଧବ ନାହିଁ
ତ୍ରିଭୁବନେ ତୁଳନା
ନେଇ ଫେଡ଼ ଗୁହାଁ ବାରେ
ପଦ୍ମ ଲୋଚନ ।୧।
ପତିତ ହୋଇ ମୁଁ କେବେ
ଲୋଡ଼ିଲେ ତୋ ଶରଣ
ଅରୁଣ ସ୍ତମ୍ଭ ସମୀପେ
ଥାଇ କଲେ ଜଣାଣ
ଗୁହିଁବୁ ଖୋଲି ଦୁଆର
ଭୟ ଭଞ୍ଜନ ।୨।
ମାଗେନ କୁବେର ଧନ
ଦେବରାଜ ଆସନ
କଞ୍ଜ ଚରଣେ ତୋହର
ଏତିକି ନିବେଦନ
ଡ଼ାକଲେ ଶୁଣିବୁ ଥରେ
ଦୁଃଖ ନାଶନ ।୩।

—*—



Digitized by srujanika@gmail.com

## (ପନ୍ଦର)

ଚଉଦ ଭୁବନେ ବନ୍ଧୁ
ତୁ ମୋର ଏକା
ତୋ ବିନା ଅଛି କେ ଆଉ
ପରାଣ ସଖା
ତୁ ଯେବେ କରିବୁ ପର
ଶରଣ ନେବି କାହାର
ଜଗତେ ବାନ୍ଧବ ଅପ-
ଯଶର ଡଙ୍କା ।୦।

ଥର ଥର କଣ୍ଠେ କେତେ
ଡାକିଲି ତୋତେ
ଥରେ ଦୟା କରିଲୁନି
କରୁଣ ଚିତ୍ତେ
ନୀରବେ ରହୁ କପଟ
ଶୁଣି ମୋ ଡକା ।୧।

କା' ଆଗେ କହିବି ଦୁଃଖ
ହୀନ ଜନମ
ଯେ ଡାଳ ଧରେ ସେ ଛିଣ୍ଡେ
କରମ ବାମ
କେମିତି ସହେ ତୋ ଦେହ
ମୂରଲୀ ଫୁଙ୍କା !୨।

ଭକତ ଅନ୍ତର ବୁଝୁ
ଅନ୍ତରଯାମୀ
ଭକତ ସତ୍ରୁ ଛିଁ ଝୁରି
ପାଦେ ପ୍ରଣମି
ଆଶିଷ ଦେଏତୁ ଥରେ
ହେ ଗିରିଟେକା ।୩।

—※—



Digitized by srujanika@gmail.com

## (ଷୋହଳ)

ପ୍ରଣତି ମା ବୀଣାପାଣି
ଧବଳ ବାସିନୀ
ଜାଣ ସୁହାସିନୀ ମାଗୋ
ବର ପ୍ରଦାୟିନୀ ।୧।

କବି ପ୍ରସବିନୀ ମାତ
ବିଧାତା ରମଣୀ
ତୁମ୍ଭର କୃପାରୁ ଭବେ
ମୂର୍ଖ ହୁଏ ଜ୍ଞାନୀ ।୨।

ଅଜ୍ଞାନ ତମିର ନାଶି
ଦେଖାଅ ସରଣୀ
ଶୁଦ୍ଧ ବୁଦ୍ଧ କର ଆତ୍ମା
ସଙ୍କଟ ତାରଣୀ ।୩।

କୋଟି କୋଟି ତପସ୍ୟାରୁ
ଯେ ଫଳ ମିଳେନି
ତୁମ୍ଭର ଅଣୁଏ କୃପା
ତାହା ଦିଏ ଆଣି ।୪।

ଭବଭୂତି, କାଳିଦାସ
ବେଦବ୍ୟାସ ମୁନି
ଲଭି ତୋର କୃପା ହେଲେ
କବିକୁଳମଣି ।୫।

ସେହି ମହାପୁରୁଷଙ୍କ
ପଦାଙ୍କ ସରଣୀ
ଅନୁସରି ଧ୍ୟାନ କରେ
ତୁମ୍ଭଠି ଦର୍ପିନୀ ।୬।

—*—



Digitized by srujanika@gmail.com

# (ସତର)

ଶୁକ୍ଳ ପଦ୍ମାସନା
ଶ୍ୱେତ ପଦ୍ମାନନା
ବୀଣାପାଣି ସରସ୍ୱତୀ
କାଶ ସୁହାସିନୀ
କବି ପ୍ରସବିନୀ
ବିଶାଳାକ୍ଷି ଭଗବତୀ ।୧।

ଦୁଗ୍ଧ ଫେନନିଭ
ସ୍ନିଗ୍ଧ ଅତୀବ
ତବ ବସନର ଶୋଭା
ମୟୂର ବିରଚେ
ଶ୍ରୀଶଷିର ପୁଚ୍ଛେ
ଝଳେ ମରକତ ପ୍ରଭା ।୨।

ନନ୍ଦାର ବରନା
କୁନ୍ଦ ଅପଘନା
ବୃନ୍ଦାରକ ବୃନ୍ଦବନ୍ଦ୍ୟା
ବାଲ୍ମିକି, ବ୍ୟାସ
ମାଘ, କାଳିଦାସ
କବି ଜନନୀ ଅନିନ୍ଦ୍ୟା ।୩।

ରାଜ ହଂସ ଯୁତ
ହୀରକ ରଂଜିତ
ପଦ୍ମରାଗ ମଣିସମ
କୁନ୍ଦେନ୍ଦୁ ଧବଳ
ଚରଣ ଯୁଗଳ
ଦିଶଇ କେଡେ ସୁଷମ ।୪।

ତବ ପଦତଳେ
ଅକିଞ୍ଚନ ଢାଳେ
ଭକତିରେ ପ୍ରଣିପାତ
ଅଜ୍ଞାନ ଅମାର
ତୁମେ ରବିକର
କୃପାକର ଅଣୁମାତ୍ର ।୫।

—※—

 ରବୀନ୍ଦ୍ର କୁମାର ମହାପାତ୍ର

Digitized by srujanika@gmail.com

## (ଅଠର)

### ବାଣୀ ବିଶ୍ୱବନ୍ଦିନୀ

ତୁହି ଭାରତୀ ତୁ ସରସ୍ୱତୀ
ତୁ ଅଟୁ ବୀଣାପାଣି । ।୦।

ତୋ ପ୍ରିୟସୁତ ସେ କାଳିଦାସ
ଯାହା ମୁଁ ଅଛି ଶୁଣି
ବିଦ୍ୟା ବିହୁନେ କାନ୍ତାପମାନେ
ଇଚ୍ଛିଲା ପ୍ରାଣଦାନ ।୧।

ନବ ତରୁଣୀ ପାଶରେ ପୁଣି
ଲାଂଛିତ ପୁତ୍ରମଣି
ଜନନୀ ହୃଦେ ଅଶିବ ବାଧେ
ଯାତନା ପାରିଜାଣି ।୨।

ଗଭୀର ଜଳେ ମରଣ କାଳେ
ରଖିଲୁ ଡାକିଆଣି
ସପତ ବାର କରି ଉଦର
କରିଲୁ ମହାଜ୍ଞାନୀ ।୩।

ବିଦ୍ୟା ଗର୍ବିଣୀ ସମୀପେ ପୁଣି
ପୁତ୍ର ପ୍ରଶଂସା ଘେନ
ତପନ ତଳେ ସୁକବି ପଣେ
କରିଲୁ ତାଙ୍କୁ ମାନୀ ।୪।

ସେ କବିଗୁରୁ ଚରଣ ତଳୁ
ଧୂଳି କଣିକା ଆଣି
ତା' ମାଧ୍ୟମରେ ତୋର ପଦ୍ମରେ
ରଖ ପ୍ରଣତ ଭଣି ।୫।

—*—



Digitized by srujanika@gmail.com

( ଉଦଣେଇଶି )

ତୁମ ସେବାରୁ ମୁଁ ମନାହୁଏ ଯେବେ
ଅଖିଳ ବ୍ରହ୍ମାଣ୍ଡ ଈଶ୍ୱର
ହେଲେ ମୋ ଅନ୍ତର ଘବରେ ଆତୁର
ହୋଇ ମଣୁଥିବ ଆଧାର ।୦।

ଜୀବନର ଯେତେ ସମ୍ବଳ ପ୍ରଭୁ
ଛଡ଼ାଇ କରିଲେ ଫକୀର
ନୀଳାଚଳ ଯାଇ ଶ୍ରୀମୁଖକୁ ଚାହିଁ
ଭୁଲିବ ଯାତନା ମୋହର ।୧।

ନିରମମ ହୋଇ ସେୟେ ପଦାଘାତେ
କରିଲେ କରୁଣା ଅନ୍ତର
ଶ୍ରୀପଦ୍ମର ଧୂଳି ମୁଣ୍ଡେ ମୋର ବୋଳି
ସେବିବି ଚରଣ ତୁମ୍ଭର ।୨।

କ୍ରୋଧାନଳେ ଯେବେ ଜାଳିଦିଅ ପ୍ରଭୁ
ଜଳିବ ମୋର ଏ ଶରୀର
ଜଳି ପାପଘର ନିରଞ୍ଜନା କରି
ହୋଇବି ଚରଣେ କଙ୍କର ।୩।

—*—



Digitized by srujanika@gmail.com

(କୋଡ଼ଏ)

ପ୍ରଭୁ ହେ······

ଆଶିଷ ଅରୁଣ ବିନା

ଆଶା ଶତଦଳ

ଯାଉଛି ମଉଳି

ନିରାଶ କଣ୍ଟକୁ ପିନା ।୦।

ଦୁଃଖ ନଦୀ ଘାଟରେ

କରଇ କ୍ରନ୍ଦନ

ସୁଖଶୀର ସବୁ

କରିଛ ସପନ

ପ୍ରଭୁ ଅନ୍ତର୍ଯ୍ୟାମୀ

ଅନ୍ତର ନଜାଣ

ନାହିଁକି ତିଳେ କରୁଣା ? ।୧।

ଦୟା ପାରାବାର

ଆହେ ଜନାର୍ଦ୍ଦନ

ଦୟାରୁ ବନ୍ଦୀଏ

କରିବାକୁ ଦାନ

ନିରମମ ହେଲେ

ଜଗତ ଜୀବନ

କିଏ ହୋଇବେ ଶରଣା ।୨।

ବେଦନା ଅନଳେ

ସନ୍ତାପିତ ପ୍ରାଣ

ଅବିରତ ସ୍ରୋତେ

ନୟନ କଷଣ

ତୁମର ଆଶିଷ

ଶୀତଳ ଚନ୍ଦନ

ତା' ଲାଗି ପଦେ କାମନା ।୩।

—✳—



Digitized by srujanika@gmail.com

## (ଏକୋଇଶ)

ଦୀନ ବାଂଧବ ହେ······
ଡାକ ମୋ ନ ଶୁଣ ହେଳେ
ଆଶାହତ ହୋଇ
ଭରସା କରଛି
ତବ ଶ୍ରୀରଙ୍ଗା ଚରଣେ ।୦।

ଶୟନେ ସପନେ
ଅବା ଜାଗରଣେ
ତୁମ୍ଭ ନାମ ହେଜ ମନେ
ବଞ୍ଚିବା ସମ୍ବଳ
ହରାଇଲଣି ମୁଁ
ଲଭ କାହିଁ ବଡ଼ ପଣେ ।୧।

ଅତଳ ସାଗରେ
ମୋ ଜୀବନ ତରୀ
ଘହା ସାହା ନାହିଁ କ୍ଷଣେ
ଆଶାର ଆଲୋକ
କ୍ଷୀଣ କର ପ୍ରଭୁ
କି ଯଶ ପାଅ ଭୁବନେ ? ।୨।

ବଡ଼ ହଅଁ ବୋଲି
ଡିଣ୍ଡିମ ବଜାନ୍ତି
ସାରା ଏ ଜଗତ ଜନେ
'ନ୍ୟୂନ' ବୋଲି କହି
ପାପ କି ଅର୍ଜିବି
ଦୁଃଖ ଶୁଣୁଥିବ ଧ୍ୟାନେ ।୩।

—*—



Digitized by srujanika@gmail.com

(ବାଇଶି)

ଜଗଦମ୍ବା······
ଘନଜନେ ଦୟାକର
ଜଗମ୍ମାତା ଜାଣି
ନସ୍ତଜନା କରେ
ସଦା ତବ ଶ୍ରୀପଦ୍ମର ।୧।
ଘନ ଅକିଞ୍ଚନ
ମନାସେ ଶରଣ
ଛନ୍ଦ ଛଳନା ନକର
ଛଳନା କରିଲେ
ବୋଲିବେ ସଂସାରେ
ନାମଟି ତବ ଅସାର ।୨।
ଦୋଇ ନରମମ
ଦେଇଛ ଜନମ
ଦୁର୍ଗତି ବନ୍ଧୁ ସୋଦର
ଗମ୍ୟ ପଥ ମୋର
କଣ୍ଟକିତ ଘୋର
କମ୍ପାଇଁ ହୁଅ ନିଷ୍ଠୁର ? ।୨।
ଆଶିଷ ଶକତି
କରୁଣା ବିଭୂତି
ଇଚ୍ଛଇ ପାଦେ ତୁମ୍ଭର
ଆଗୋ ମହାମାୟା
ନ କରିତ ମାୟା
ଦରିଦ୍ରେ ଦୟା ବିତର ।୩।

—✳—



Digitized by srujanika@gmail.com

## ( ଭୈଇଶି )

ଅହଂକାର ନାଶିନୀ ମା
ହିମାଳୟ କନ୍ୟା
ଆଦ୍ୟାଶକ୍ତି ସ୍ୱରୂପିଣୀ
ପାର୍ବତୀ ଅପର୍ଣ୍ଣା ।୧।

ଇହ ସଂସାରରେ ସାର
ତୋ କୃପା ଅପାର
ଈଶ୍ୱର ରମଣୀ ରୂପେ
ଖ୍ୟାତ ଚରାଚର ।୨।

ଉମା କାତ୍ୟାୟିନୀ ଗୌରୀ
ଚଣ୍ଡିକା ଅମ୍ବିକା
ଋଷିବର ମହେଶଙ୍କ
ସ୍ୱଅଙ୍କ ନାୟିକା ।୩।

ଏଣି ନୟନ ରୁଦ୍ରାଣୀ
ଲାବଣ୍ୟ ଭଙ୍ଗିମା
ଐର ସାଜ ବନାଶିଲ
ମହିଷ ବଡ଼ିମା ।୪।

ଓଙ୍କାର ପ୍ରଣବମୟୀ
ସର୍ଜ୍ଜନା କାରଣୀ
ଔଦ୍ଧତ୍ୟ ନାଶିନୀ ମାତ
ସଙ୍କଟ ତାରଣୀ ।୫।

—*—



Digitized by srujanika@gmail.com

(ଚଉଦ)

ଜୟ ଜଗଜ୍ଜନନୀ
ଶଙ୍କର ରମଣୀ
ସିଂହବାହନୀ ଉନ୍ମାଦିନୀ
ମହିଷ ମର୍ଦ୍ଦିନୀ
ଶକ୍ତି ପ୍ରଦାୟିନୀ
ହୈମବତୀ କାତ୍ୟାୟିନୀ ।୧।

ଧୂମକେତୁ ରୂପିଣୀ
ଦୁର୍ଗତି ନାଶିନୀ
ବିଘ୍ନ ବିନାଶିନୀ ଧରଣୀ ବନ୍ଦିନୀ
ଶୈଳ ହିମାଳୟ କନ୍ୟା
ସର୍ବ ମଙ୍ଗଳା ଅପର୍ଣ୍ଣା
ଚନ୍ଦ୍ରଶେଖର ତପସ୍ୱିନୀ ।୨।

କଳୁଷ ନାଶିନୀ
କରାଳ ଭାମିନୀ
ଚଣ୍ଡିକା ଅମ୍ବିକା ଶର୍ବାଣୀ ଭବାନୀ
ହୀନ ଅକିଞ୍ଚନ ଜନ
ମାଗୁଅଛି ସନ୍ନିଧାନ
ପ୍ରସନ୍ନ ହୁଅ ସନାତନୀ ।୩।

—*—



Digitized by srujanika@gmail.com

## (ପଚିଶ)

କରୁଣା ନକର କାହିଁ
କରୁଣାକର
କରୁଣା ସାଗର ନାମ
କମ୍ପା ତୁମ୍ଭର ।୦।

ତୁମ୍ଭ ଚରଣେ ଶରଣ
ଆଗତ ହୋଇଲେ ଧ୍ୟାନ
ରକ୍ଷକ ଭକ୍ଷକ ସାଜି
କର ଆହ୍ୱାର ।୧।

ପରମ ଈଶ୍ୱର ବୋଲି
ହୃଦ ମଧ୍ୟେ ଧ୍ୟାନ କଲି
ପରମ ବଇଷ୍ଣ ହୋଇ
ମନ୍ଦ ଆଚର ।୨।

ଆଶା ଅଟ୍ଟାଳିକା କାହିଁ
ଚୂନାକର ଭାବଗ୍ରାହୀ
ଅହମଣି ମସ୍ତଚକା
ସଦା ବିଚର ।୩।

ଧ୍ୟାନ ଭକ୍ତ ଯୋଡ଼ ପାଣି
ଜପିବନ ତୁମ୍ଭବାଣୀ
ଯେଣୁ ଆର୍ତ୍ତିହାଣେ ହୁଏ
ହତ ଆଦର ।୪।

—*—



Digitized by srujanika@gmail.com

(ଛବିଶ)

କ୍ଷୀରବ୍ଧି ତନୟା ପତି
ଅଗତି ଗତି
ଦୁଃଖ ଯାତନା ତାରଣେ
ନାହିଁକି ମତି ।୦।

ଚୌର ଧାମ ମଧ୍ୟେ ଶିର
ଶ୍ରୀକ୍ଷେତ୍ରରେ ଅବତର
ବଡ଼ ଦେଉଳେ ଲୁଚିଛ
ବଡ଼ ମୂରତି ।୧।

ଭୁମ୍ବ ଦାଣ୍ଡ ବଡ଼ଦାଣ୍ଡ
ଦେଲେ ପାଦ ପାପପଣ୍ଡ
କଳୁଷ ସାଗରୁ ନର
ଯାଏ ତରତି ।୨।

ସ୍ନାନବାର ମହୋଦଧି
ନାହିଁ ଯାହାର ଅବଧି
ଯହିଁ ସ୍ନାନ କଲେ ପାପୀ
ପାଏ ମୁକତି ।୩।

ଭୋଗ ଭୁମ୍ବର ସେବତ
ମହାପ୍ରସାଦରେ ଖ୍ୟାତ
ଯାହାକୁ ସେବିଲେ ଯଶ
ହୁଏ ଭରତି ।୪।

ବଡ଼ ବୋଲି କଲି ଆଶ
ଶେଷେ ହୋଇଲି ନିରାଶ
ଧାନ ରବିକୁ ସଂତାପି
ପାଅ କୀରତି ।୫।

—*—



Digitized by srujanika@gmail.com

## (ସତ୍ତେଇଶି)

ନାମ ଭଜିବ ନାହିଁ
　　　ତୋ ନାମ ଜପିବ ନାହିଁ
ଜପିଲେ ତୋ ନାମ
　　　ମୁହିଁ କଷ୍ଟ ଲଭଇ　　।୦।

କାହାର ତୁ ଗଳାମାଳ
　　　କାହାର ବା ଜପାମାଳ
ମୋ ହୀନ କପାଳେ ଗାଳ
　　　ରଖିଛୁ ଥୋଇ　　।୧।

କାହାର ତୁ ଦୁଃଖହାରୀ
　　　କାହାର ବା ମନୋହାରୀ
ମୁହିଁ କମ୍ପା ତୋର ଅରି
　　　ନାମକୁ ଧ୍ୟାୟୀ　　।୨।

କାହାର ରୁକ୍ମଣୀ ଧନ
　　　କାହାର ଜୀବ ଜୀବନ
ମୋ ଲାଗି ତୁ ନିରମମ
　　　କହ କଂପାଇଁ　　।୩।

କାହାର କଳା କହ୍ନାଇ
　　　କାହାର ତୁ ଭବଗ୍ରାହୀ
ମୋ ହତାଶ ପ୍ରାଣ ପାଇଁ
　　　ଦରଦ ନାହିଁ　　।୪।

—*—



Digitized by srujanika@gmail.com

## (ଅଠେଇଶ)

ତୁହି ମୋର ଜପାମାଳୀରେ ବନମାଳୀ

କାଳନ୍ଦୀ କାଳୀକୁ ଦଳିଲ ପଦସ୍ପେ
ମୋ ଦୁଃଖ ଦେଉଚ୍ଛୁ ଦଳରେ ।୦।

ଜନମ ମାତ୍ରକେ ଫେଡ଼ିଥିଲୁ ପର
ଜନକ ଜନମୀ ବେଡ଼ି
ମେଘ ଅନ୍ଧକାରେ ଉଚ୍ଛୁଳା ଯମୁନା
ପଥ ଦେଇଥିଲା ଛାଡ଼ି
ଫଣାରେ ଅନନ୍ତ ବରଷାକୁ ଢାଙ୍କି
ହୋଇଲା ପଥ ସଂଖାଳରେ ।୧।

ବରଜ ଭୂଇଁରେ ଗୋଧନ ଚରଇ
ଗୋପ ଜନ ମନ ହରି
ଗୋବର୍ଦ୍ଧନ ତୋଳ ଇନ୍ଦ୍ର ଦର୍ପ ଦଳ
ଗୋପାଳଙ୍କୁ ଥିଲୁ ତାରି
ସେହିଦନୁ ଗୋପେ ଗୋବନ୍ଦ ବୋଲାଇ
ହେଲୁ ତାଙ୍କ ଗଳାମାଳରେ ।୨।

ପ୍ରଭାସ ତୀର୍ଥରେ ମାତା ଦେବକୀଧୁ
ଗରବ ଗଂଜନ ପାଇଁ
ଭାଇ ବଳରାମ ବଡ଼ମା ମୋଚନେ
ଯଜ୍ଞ ଆରମ୍ଭିଲୁ ଯାଇ
ଯଶୋଦା ମାଆର ମହତ ରଖିଲୁ
ତା' କଳା କାଇଁଚ ମାଳରେ ।୩।

—✳—



Digitized by srujanika@gmail.com

## (ଅଣତିରିଶି)

ପ୍ରଭୁ ହେ······
ଉଚ୍ଛୁଳା ନଈର ନାଉରି
ଅଥଳ ଜଳରେ
ଝଡ ବତାସରେ
କୂଳରେ ଲଗାଅ ତରି ।୦।

ନୟନ ଚଉର
ବିରସ ମନର
ତୁମେ ଅଟ ପରା ବନ୍ଧୁ
ଶୁଖିଲା ଅଧରେ
ହରଷ ଭରାଅ
ଝରଇ କରୁଣା ବିନ୍ଦୁ
ତୁମେ ପ୍ରାଣ ନାହା
ଜଗତର ସାହା
ନୁହଁ କାହାର ବଇରୀ ।୧।

ବିପଦ ଆପଦେ
ଶରଣ ଆତଙ୍କେ
ଡାକିଲେ ନିରକ୍ଷ ଜୀବ
ସୁଦୂର ପଥରେ
ଥାଇ ଶୁଣିପାର
ନହୋଇ ନିମିଷେ କ୍ଲୀବ
ମୁଁ ଜଣେ ପତିତ
ଶ୍ରୀପଦେ ଆଶ୍ରିତ
ଶୁଣ ଏ ଦୀନ ଗୁହାରି ।୨।

—*—

ଶ୍ରୀ ରବୀନ୍ଦ୍ର କୁମାର ମହାପାତ୍ର

Digitized by srujanika@gmail.com

## ( ତରଣି )

ତୋ'ର ଦୁଆରେ ମୁହିଁ
ଧାନ ମଜୁରିଆ
ତୋ'ର କ୍ଷେତରେ ମୁହିଁ
ହୋଇଛି ମୂଲିଆ
ମୋର ଯେତେ ସୁଖ ଦୁଃଖ
ଅଭାବ କଷଣ ଶୋକ
ବରଷକ ବାରମାସ
ବୁଝୁରେ କାଳିଆ ।୦।

ଝଡ଼ ବଢ଼ି ବରଷାରେ
ନ ଥାଉ ମୋ ଘର
ବୁକେ ଦେଇ ଓଦାକନା
ଜଗିଛି ତୋ କ୍ଷେତ
ମାଲିକ ଫସଲ ରହୁ
ମୋର ପଛେ ହାନି ହେଉ
ଖାଉଁଦ ଥିଲେ ତ ଭୃତ୍ୟେ
ହୋଇବଟି ସାହା ।୧।

ପାପ ପୁଣ୍ୟ ଭଲମନ୍ଦ
ମୁଁ କିଛି ଜାଣେନା
ମୁନିବର ସେବକ ମୁଁ
ସେବା ଖାଲି ଜଣା
ମୋ ମରମ ତଳ କଥା
ମୋ ଅନ୍ତରତଳ ବ୍ୟଥା
ତୁ ନ ବୁଝିଲେ ବ ମୁଁ
ତୋ' ବାରମାସିଆ ।୨।

—*—



Digitized by srujanika@gmail.com

## (ଏକତରଣି)

ଚକା ନୟନ ହେ

ଚେତା ଲାଗି ଝୁରେ ପରାଣ

ଶୟନେ ସପନେ

ଅବା ଜାଗରଣେ

ବ୍ୟାକୁଳ ଏ ହୃଦମନ ।୦।

ଭବ ପାରାବାର

ଉଚ୍ଛାଳି ତରଙ୍ଗେ

ଘେରେ ମୋର ନଉକାରେ

କାତ ନାହିଁ ପୁଣି

ଆହୁଲା ପତର

ଭାସିଛି ଖର ସୁଅରେ

ଏପରି ନାବକୁ

କପରି ବାନ୍ଧବ

କୃଷ୍ଣ ଜଗତ ଜୀବନ ।୧।

ମରୁ ବାଲି ପରେ

ଶ୍ରାନ୍ତ ପଥିକର

ସାଥୀ ମାୟା ମରୀଚିକା

ମରୀଚିକା ପଛେ

ଜଳ ଠୋପେ ଲାଗି

ଧାଏଁ ତପତ ବାଲୁକା

ପଥହରା ଏବେ

ହତାଶ ପଥିକେ

ଦେଖାଅ ଆଶା-ଅୟନ ।୨।

—*—



Digitized by srujanika@gmail.com

( ବଡ଼ଥାଳି )

କାହ୍ନାଇଁ ମୋ କଳା ମାଣିକ
ଭୁଲିଗଲୁକି, ମୋ 'ମାଆ' ଡ଼ାକ
ପରଶନ୍ତ କାଳେ
ଯାଉଥିଲୁ କୋଳେ
ଛାଡ଼ିଗଲୁ ଦେଇ ବିରହ ଶୋକ ।୦।
ବାଲ୍ୟକାଳେ ହେଉ ଅଝଟ
କେତେ ମୋତେ ଦେଉଥିଲୁ ଘାଟ
ସେଥି ଲାଗି ମନେ
ଥିଲାକି କପଟ
ଚାଲିଗଲୁ କନ୍ଦାଇ ଜୀବନଯାକ ।୧।
ସଖା ତୋ ସୁଦାମ ସୁବଳ
ଧେନୁବତ୍ସା ଗୋପୀ ଗୋପାଳ
ବାତୁଳ ବିକଳ
ନନ୍ଦ ପିତା ତୋର
ଝୁରି ତୋତେ ସର୍ବେ ହେଲେଣି ମୂକ ।୨।
ଉଜାଗରେ ଯାଏ ରଜନୀ
କାହ୍ନା ନନ୍ଦ ଘରକୁ ଯିବଣି
ମାଆ ବୋଲି ଡ଼ାକି
ଉଠିବ ଚମକି
ଖୋଇଦେବ କୋଳେ ମେଣ୍ଟିବ ଭୋକ ।୩
ଦିବାନିଶି ହେଉଛି ମନେ
ଛବି ତୋର ନାଚେ ନୟନେ
ଥରେ ଦେଲେ ଦେଖା
ତୁଟିବ ଆଶଙ୍କା
କୋଳେଇ ଫେଡ଼ିବ ସକଳ ଦୁଃଖ ।୪।

—※—



Digitized by srujanika@gmail.com

(ଚେତାବନୀ)

ଆରେ ବାଇବର          ମୋ ବଚନେ ତୁହି
ବୋଲକର
ତୁ ଦେଖୁଛୁ ଯାହା          ସବୁ ମୋହ ମାୟା
କେହି ନୁହେଁ ତୋର ଆପଣାର ।୧।

ସବୁ ବୋଲୁ ତୁହି          ମୋର ମୋର
କଦାପି ନୁହଁଇ କେ କାହାର
ଲଭିଲେ ମରଣ          ଯାଏ କଏ ଧାଇଁ
ଆତ୍ମାଜଳେ ତୋର ନିରନ୍ତର ।୨।

କଏ ପୁତ୍ର ତୋର          କଏ ଦାର
କଏ ତୋର ବନ୍ଧୁ କେ ସୋଦର
ସୁଖ ସଂପଦରେ          ସଭିଏଁ ନିଜର
ଦୁଃଖ ଆତଙ୍କରେ ସବୁପର ।୩।

ଅଳୀକ ସଂସାରେ          ସୁଖ ସ୍ଥିର
ଦୁଃଖ ସବୁଦିନ ସାଥୀ ତୋର
ଟିକେ ସୁଖ ପାଇଁ          ହେଉଛୁ ତୁ ବାଇ
ନିଜ ଆତ୍ମା କରୁ ନାଶଖାର ।୪।

ଗୃହୁଁ ଯେବେ ହେବୁ          ତୁ ଉଦ୍ଧାର
ମୋହ ମାୟା ସବୁ ପରିହର
ଶରଣ ରକ୍ଷଣ          ଦୁଃଖ ବିନାଶନ
ପାଶେ ସଦା ରଖ ଚିତ୍ତ ତୋର ।୫।





Digitized by srujanika@gmail.com

(ଚଉତିଶି)

କୁଞ୍ଜବନ କାଳିଆରେ
ନେହୁଗ ତୋତେ
ବଜାନା ମୁରଲୀ ତୋର ଏତିକ ଅଳି ମୋହର
ନକର ଆଉ ତୋ ପ୍ରୀତି ଲାଳସୀ ମୋତେ ।୧।

ଶାଶୁ ମୋ ଜଟିଳା ନଣନ୍ଦ କୁଟିଳା
ଗୃହିଁଥାନ୍ତି ମୋର ବାଟ
ଯମୁନା ତଟରୁ ଢଳମେ ଫେରିଲେ
କରିଥାନ୍ତି ନିତ ହଟ୍ଟ
ହେ ନନ୍ଦ ନନ୍ଦନ ବଇଁଶୀ ବଦନ
ବୁଝିଛୁ କେବେ କପଟ ମୁହିଁ କରନ୍ତେ ? ।୧।

ମୁହିଁ ବୃଷଭାନୁ ରାଜାଙ୍କର ଜେମା
ଚନ୍ଦ୍ରଶେଣା ମୋର କାନ୍ତ
ତୋର ବଂଶୀ ସ୍ୱନେ ହୋଇ ପାଗଳମି
ହରଏ ମୁଁ ପତିବ୍ରତ
ହେ ମୁରଲୀ ଫୁଙ୍କା ନକର ତୁ ଡକା
ମୋଠାରେ ଦରଦ ଥିଲେ ନାହିଁକି ଟଳେ ? ।୨।

ନିନ୍ଦା ଅପବାଦ କେତେ ଯେ ସହିବ
ବ୍ରଜରେ ବାଜେ ନାଗରା
ରାଧା କଳଙ୍କିନୀ ପଡ଼େ ଖାଲି ହୁରି
ମୋ ପର ବଧୂ ଲୋକର
ହେ ମାପଚଟିଆ ଭାବ ବନୋଦିଆ
ସହେ କି ତୋ ପୀରତିରେ ଯିବ ପରତେ ? ।୩।

—*—



Digitized by srujanika@gmail.com

# (ପଇଁତିରିଶ)

ଶ୍ୟାମ ସୁନ୍ଦର ହେ
ଧରଣୀଧର
ଶ୍ୟାମଳ ଉତ୍କଳ କଲ
କ ଘୁରଖାର
ବିଂଶ ଶତାବ୍ଦୀର ଅନ୍ତେ
ନଷ୍ଟ ଉତ୍କଳ ପ୍ରାନ୍ତେ
ସରଜିଲ କାଳନେମି
ପ୍ରଳୟ ଜଳ ।୦।

ଯେଉଁ ତୃଣାବର୍ତ୍ତ ଥିଲ
ଶୈଶବ କାଳେ
ସେ ଦାନବ ବାତ୍ୟା ପୂର୍ବ-
ସାଗର କୂଳେ
ଲକ୍ଷେ ସମୁଦ୍ର ଗର୍ଜ୍ଜନେ
କୋଟିଏ ଫଣା ଦଂଶନେ
ବିଦାରିଲ ଜଳ ସ୍ଥଳ
ନଭ ମଣ୍ଡଳ ।୧।

ପେଷିଥିଲ କୁରୁକ୍ଷେତ୍ରେ
ସୁଦରଶନ
ନାଶିବାକୁ କୁରୁବଂଶ
ଅଧର୍ମ ପଣ
କେଉଁ ଅପରାଧେ ଆଜ
ରୁଦ୍ର ଅବତାର ସାଜ
ବାଢଚଢେ ଧର୍ମକ୍ଷେତ୍ର
କଲ ସଂହାର ।୨।

ବିଚିତ୍ର ଭୁମ ସର୍ଜ୍ଜନା
କଳା କୌଶଳ
ଭାଙ୍ଗିବା ଗଢ଼ିବା ଖେଳା-
ବାଳର ଖେଳ
ଇଚ୍ଛାମୟ ବାସୁଦେବ
ପଲକେ ସୃଷ୍ଟି ସମ୍ଭବ
ସବୁଜେ ହୋଇବ ଧରା
ଅତି ସୁନ୍ଦର ।୩।

—※—

ରବୀନ୍ଦ୍ର କୁମାର ମହାପାତ୍ର

Digitized by srujanika@gmail.com

(ଛତିଶ)

କେବେ ଆସେ ତୋ ପାଶକୁ
ନେବା ଲାଗି କିଛି
କେବେ ପୁଣି ଯାଏ ଫେରି
ନ ମାଗି ମୁରୁଛି
ସବଭକ୍ତ ସ୍ନେହ ପ୍ରୀତି
ବନଫୁଲ ମାଳଗୁନ୍ଥି
ସଖାରେ, ତୋ ସେବାଲାଗି
ବ୍ରଜରୁ ଆସିଛି ।୦।

ଘୂରୁଥାଉ ହୃଦବନେ
ଭୋକଶୋଷ ଭୁଲି
ଅନ୍ତରେ କି ସୁଖ ପାଉ
ତ୍ରିଭୁବନ ବୁଲି
ଲାଗି ଝାଂଜି ଟାଣଖରା
ଝାଳ ବହେ ଦେହସାରା
ଶ୍ରମରେ ବଂଚିବ ଅଂଗ
ବସ୍ତ୍ରେ ଦେବି ପୋଛି ।୧।

ବାଜିଲେ ତୋ ପାଦେ କଣ୍ଟା
ଝରେ ମୋଠୁ ଲୁହ
ଶ୍ରମେ ଶୁଖିଗଲେ ତନୁ
ଦେହ ମୋର ଦହୁ
ଅର୍ଜୁନ ରଥେ ସାରଥୀ
ଜରାସନ୍ଧ ଯୁଦ୍ଧେ ରଥୀ
ହୋଇକି ପାଇଲୁ ବ୍ୟଥା
ପ୍ରାଣ ବଳପୁଛି ।୨।

—*—



Digitized by srujanika@gmail.com

(ସଇଁତିରିଶ)

ବିଷାଦ ବୃକ୍ଷକୁ ଝୁରି କାନ୍ଦୁରେ, ପାଗଳାମନ
ଇନ୍ଦ୍ରିୟ ବୃକ୍ଷକୁ ଝୁରି କାନ୍ଦୁରେ
ବନ୍ଧୁ ବୋଲି ହେଲୁ ବାଇ
ବନ୍ଧୁଏ ଦୟା ନପାଇ
ତୁହୁଁ ପାରି ହେବୁ
ଭବ ସିନ୍ଧୁରେ, ପାଗଳାମନ...।୦।

କାଳ ସୁଅର ଗରଭେ
ଭାସମାନ ବୃକ୍ଷମାନେ
ଭରସା କରି ସରବେ
ଧାଆଁନ୍ତି ମୁକତି ଠାବେ
ବୁଡ଼ନ୍ତା ବୃକ୍ଷ କି
କଲି ପାବୁରେ, ପାଗଳାମନ ।୧।

ଷଡ଼ରିପୁ ବିହଙ୍ଗମ
ବୃକ୍ଷ ଡ଼ାଳେ ସମାଗମ
କରନ୍ତି ବାସ ରଚନ
ମଳ ନୁହ ବରଜନ
ନିସ୍ତାର ହେବୁ କି
ପୂତି ଗନ୍ଧରେ, ପାଗଳାମନ...।୨।
ବଚନ ଢେଲି ଫୋପାଡ଼ି
ବିହଙ୍ଗ ନ ହୁଏ ରଡ଼ି
ହରିନାମ କରତାଳି
ବାଣ ସମ ଦିଏ ଟାଳି
ଖପାନା ତୂଣୀର
ତୋର କାନ୍ଧରେ, ପାଗଳାମନ...।୩।

—*—



Digitized by srujanika@gmail.com

## (ଅଠରଣ)

ମୋହନ ହେ ମନମୋହନ
ମୋହନ ହେ ମନମୋହନ
ତୁମେ ମୋ ହୃଦୟ ସ୍ପନ୍ଦନ
ତୁମେ ମୋ ନୟନ ଅଞ୍ଜନ
ତୁମେ ଭବ ତାପ ଚନ୍ଦନ
ତୁମେ ତ୍ରିଭୁବନ ବନ୍ଦନ । ୧ ।

ଭବ ରଙ୍ଗ ଭୂଇଁ କି ବିଚିତ୍ର ପ୍ରଭୁ
ମନ ତ ବୁଝୁନା କାହିଁ
କାମନା ବାସନା ଚରିତାର୍ଥ ପାଇଁ
ଜଗତ ଚାଲିଛି ଧାଇଁ
ଅନ୍ତର ତଳ ଲୋଡ଼ା ନୁହେଁ କା'ର
ଲୋଡ଼ା ଏକା ଖାଲି ଧନ । ୨ ।

ଭବେ ଯେଉଁ ମନ ଅଲୋଡ଼ା ଅସାର
ଲୋଡ଼ା କେବଳ ତୁମର
ମନ ଯା' ସରଳ କର ଆପଣାର
ପ୍ରାଣାଧିକ ନିରନ୍ତର
ମନ ନିକମ୍ପେ ଅରପି ଦେଉଛ
ଅମୃତର ରସାୟନ । ୩ ।

ଧନ ଯଉବନ ମାନ ସନମାନ
ସବୁ ଚାଲିଗଲା ପରେ
ଅବାଞ୍ଛିତ ମନ କମେଁ କା' ଲାଗେନା
ମନେ ମନେ ଝୁରି ମରେ
ସେ ନିଃସ୍ୱ ମନ ପାଇବାକୁ ତୁମେ
ବ୍ୟାକୁଳ ବିଶ୍ୱଜୀବନ । ୪ ।

—*—



Digitized by srujanika@gmail.com

(ଅଣଗ୍ରୁଳଣି)

ରେ ମନ ଉଠିଥି
ଚଷିଯା କ୍ଷେତ ।୧।

ହୃଦୟ ଭୂଇଁକୁ ବାଛି
ବୁଦ୍ଧି ବିବେକକୁ ଯୋଚି
ନିଷ୍ଠା ରୂପୀ ଖତପାଗେ
ଦେବୁ ରତ ।୨।

ସତ୍କର୍ମ ବିହନ ବୁଣି
ପ୍ରେମଜଳ ଦେବୁ ସିଞ୍ଚି
ଭାବର ଅଙ୍କୁର ଯେବେ
ହୋଇବ ଜାତ ।୨।

ହରିନାମ ଗୃହଗଛ
ବଢ଼ିବ ହୋଇ ସୁସଞ୍ଚ
ବିଶ୍ୱାସର ସାର ତହିଁ
ଦେବୁ ନିରତ ।୩।

ଘେରାଇ ସତ୍ସଙ୍ଗ ବାଡ଼
କରିବୁ କ୍ଷେତ ନିଗାଡ଼
ଜ୍ଞାନ ଫସଲ ହୋଇବ
ତହିଁ ଉଚିତ ।୪।

ଜ୍ଞାନୁ ଭକତି ଉଦୟ ,
ଫେଡ଼ିବ ଭବ ଫଶୟ
ଲଭିବୁ ତେବେରେ ସିନା
ଦିବ୍ୟ ଅମୃତ ।୫।

—*—



Digitized by srujanika@gmail.com

(ଗୁର୍ଜରୀ)

ତ୍ରିଭୁବନ ପାଳକ ହେ
ଜଗତ ଉଦ୍ଧାରକ
ବଚସ ଗୁଭୁଷାବନ୍ତ
ତୁମେ ଛଳନାପୂକ ।୦।
ତୁମ ଧନେ ବଳୀ ଧନେ
ହେଲା ବଳୀସ୍ଥାନ
ଦାତାପଣେ ରବତଳେ
ନ ଗଣିଲ ଆନ
ଦାନ ଛଳେ ମାଗି ନେଲ
ଅମୂଲ୍ୟ ମସ୍ତକ, ତ୍ରିଭୁବନ ପାଳକ···।୧।
ତୁମ ଲୋମ କୂପେ ଭରା
ଅସଂଖ୍ୟ ବ୍ରହ୍ମାଣ୍ଡ
ପାଣ୍ଡବ ଲାଗି ମାଗିଲ
ପଡ଼ା ପାଞ୍ଚ ଖଣ୍ଡ
ଅମାନେ୍ୟ ନିଧନ କଲ
ହସ୍ତିନା ଶାସକ, ତ୍ରିଭୁବନ ପାଳକ···।୨।
ସଂସାର ସାଗରେ ତୁମେ
ଜୀବର ନାଉରୀ
ଧୀବରେ ଡାକିଲ ଗଙ୍ଗା
ହେବା ଲାଗି ପାରି
ତାରିଥିଲ ଧୀବରକୁ
ଅସଲ ନାବିକ, ତ୍ରିଭୁବନ ପାଳକ···।୩।

—*—



Digitized by srujanika@gmail.com

( ଏକତାଳି )

କମଳ ନୟନ           ହେ ଅନ୍ତରଯାମୀ
ନ ବୁଝିକ ମୋ ଅନ୍ତର
ତୁମ ଅଙ୍ଗ ଯୋଗ୍ୟ           ସଜ କଞ୍ଜ ଅର୍ଘ୍ୟ
ସତେ ଅଲୋଡ଼ା ତୁମର । ।୦।

ବଡ଼ ସକାଳରେ           ତୁମ ପୀରତରେ
ଆଣିଥିଲି ପଦ୍ମଫୁଲ
ପଥ ବହୁ ଦୂର           ହେବାରୁ ଉଚ୍ଛୁର
ଭଲ କି ହୋଇଲା ଭେଲ !
ବାସି ଫୁଲ ବୋଲି           ସେବକେ ଧିକ୍କାରି
ବେଡ଼ାରୁ କଲେ ବାହାର ।୧।

ଅତି ସନ୍ତର୍ପଣେ           ସିଂହଦ୍ୱାର କୋଣେ
ବାସ ଢାଙ୍କି ବାସି ଫୁଲେ
ସାଷ୍ଟାଙ୍ଗେ ପଡ଼ିଲି           ଲୁହେ ପଣ କଲି
ପ୍ରାଣ ବିସର୍ଜିବି ଜଳେ
କି ଦେଖେ ନେତ୍ରର           ଦାସ ମନୋହର
ଦିବ୍ୟ ସୁଗନ୍ଧ କମଳ ।୨।

ଫୁଲର ସୁବାସ           ଛୁଟେ ଦଶ ଦିଶ
ଦର୍ଶକେ ହେଲେ ଚକିତ
ସ୍ୱୟଂ ଗଜପତି           ଆଦେଶେ ଝଟତି
ଦିଅଙ୍କୁ ହେଲା ଅର୍ପିତ
ମରମର ବ୍ୟଥା           ଫେଡ଼ିଥାଅ ଧାତା
ପ୍ରାଣଧନ ଭକତର ।୩।

ମାଘ ମାସ ଶୁକ୍ଳ           ପଞ୍ଚମୀ ପୂର୍ବର
ବୁଧ କମ୍ପା ଶନବାର
ଦାସ ମନୋହର           ପଦ୍ମରେ ବିଭୋର
ବେଶ ତୁମ ମନୋହର
ଦିବ୍ୟ ପଦ୍ମବେଶ           ନୟନ ମାନସ
ରମୁଥାଉ କାନ୍ତଧର ।୪।

—*—



Digitized by srujanika@gmail.com

(ବଯ୍ୱାକଳଶ)

ମନ, ଭ୍ରମୁଥା ଚୌରାଅଶୀ
ଲକ୍ଷ ଯୋଜନ
ଯେତେ କି ପାଇବୁ ତୁହି
ମୁକ୍ତି ଅପୂନ
ଝୁରୁ କାମିନୀ କାଞ୍ଚନ
ବିଷୟେ ଆସକ୍ତ ମନ
କରୁ ଦୁର୍ଲ୍ଲଭ ଜୀବନ
କି ଅକାରଣ ।୦।

ଗତିପଥ ବୃତ୍ତାକାର
ଘେରିଛି ଉଚ୍ଚ ପ୍ରାଚୀର
ଚୌରାଅଶୀ ଲକ୍ଷ ଦ୍ୱାର
ଅବରୁଦ୍ଧ ପରସ୍ପର
ଏକଇ ଖୋଲା ଦୁଆର
ମାନବ ପ୍ରାଣ, ମନ ଭ୍ରମୁଥା··· ।୧।
ଅଂଶୁ ଝାଞ୍ଜି ବତାସରେ
ଜନ୍ତୁର ବିକଟ ସ୍ୱରେ
ଧୂଳି ଧୂଆଁ ପାଉଁଶରେ
ଘୂରୁ ଅଣ ନିଶ୍ୱାସରେ
କରୁ ମୁକତି ଆଶାରେ
ଇଷ୍ଟ ସ୍ମରଣ, ମନ ଭ୍ରମୁଥା··· ।୨।
ପଥ ହୁଡ଼ା ଅନ୍ଧ ତୁହି
ସନ୍ଥ ରୂପେ ଭବଗ୍ରାହୀ
ଅହେତୁକୀ କୃପା ବହି
ପଥ ଦିଅନ୍ତି ଧରାଇ.
ହେଲୁ ଇନ୍ଦ୍ରି ସୁଖ ପାଇଁ
ଲକ୍ଷ୍ୟ ବିହୀନ, ମନ ଭ୍ରମୁଥା··· ।୩।

—*—



Digitized by srujanika@gmail.com

## (ତେୟାଳିଶ)

ଦାସ ହୋଇ ତୋ ଦୁଆରେ
ଧନ ମୋ ନ ଗଲି
ପ୍ରଭୁ ପଣେ ଆଉ ତୋର
ଯଶ କ ରହିଲି ।୦।

ତୁହି ପରା ତ୍ରିଲୋକର
ପରମ ଈଶ୍ୱର
ବୃତ୍ତି ବଢାଉଛୁ ନର
ଦେବତା କିନ୍ନର
ସିଏ ସୁଖ ଲାଗି ତୋର
କର୍ମେ ଅଧିକ ତତ୍ପର
ଦେଉ ସମର୍ପି ସକଳ
ହୃଦ କରି ଖୋଲି, ଧନ ମୋ ନ ଗଲି···।୧।

ଜଗତେ ଅଛନ୍ତି କେ ଆଉ
ତୋ ସମ କରତା
ଦାସକୁ ଯେ ଦିଏ ତା'ର
ମାଲିକ ମାନ୍ୟତା
ସିଏ ତୋ ଶରଣାଗତ
ପାଲଟି ଯାଉ ତା' ଭକ୍ତ
ଭକତ ସହିତରେ ବନ୍ଧା
ତୁହି ନନ୍ଦବଳା ଧନ ମୋ ନ ଗଲି ··।୨।

ଜୀବର ଜୀବନ ତୁହି
ନୟନ ପୁତ୍ତଳୀ
ଜନମେ ଜନମେ ମୁକ୍ତି-
ପଥର ସଂସାରୀ
ହୁଡ଼ିଲେ ତୋ ସତ୍ୟ ପଥ
ଜୀବ ନିମନ୍ତେ ଚିନ୍ତିତ
ଯାଚି ଦେଉ ଆନନ୍ଦର
ମନ୍ଦାକିନୀ ଧାର, ଧନ ମୋ ନ ଗଲି···।୩।

—※—



Digitized by srujanika@gmail.com

## (ଚଉତିଶା)

ଫଗୁ ତଳେ ଦେ'ରେ
ଗୋପ କଲା କହ୍ନାଇଁ
ବାଜଲେ ସେ ଭଜ
ହେ ବରଜରାଜ !
ସଂସାର ଯାତନା ଯିବ ଉଭାଇ ।୦।

ଶଇଶବେ ସେ ପଦରଜ
ଲଭିଲେ ଅର୍ଜୁନ ଯମଜ
ମଣିଗ୍ରୀବ, ନଳ-
କୁବେର ଉଦ୍ଧାର
ହୋଇ ପ୍ରଣମିଲେ ତୋ ପଦ ଦୁଇ ।୧।

ଦେଲୁ ବୋଳ ସତେ କ ଧୂଳି
କୁବ୍‌ଜା ହେଲା ରୂପସୀ ବାଳୀ
ତୋର ପରସାଦେ
ଭାଗ୍ୟ ରବି ଉଦେ
ସୁଲକ୍ଷଣୀ ହୋଇ ପାଦେ ନମଇଁ ।୨।

ତୁଣ୍ଡେ ଦେଲୁ ବରଜ ଧୂଳି
ମାତାଙ୍କୁ କରିଲୁ ବାଉଳୀ
ମୁଖର ଗହ୍ୱରେ
ଅପୂର୍ବ ଦୃଶ୍ୟରେ
କୋଟିଏ ବ୍ରହ୍ମାଣ୍ଡ ଦେଲୁ ଦେଖାଇ ।୩।

—*—



Digitized by srujanika@gmail.com

(ପଇଁତ୍ରିଶି)

ତୋତେ ନ ଦେଖିଲେ ମୁଁ ଦଣ୍ଡେରେ
ତୋତେ ନ ଦେଖିଲେ ମୁଁ ଦଣ୍ଡେ
ମୋତେ ରୁଚେନା ଜଳ
ମୋତେ ରୁଚେନା ଫଳ
ମୋତେ ରୁଚେନା ଅନ୍ନ
ରୁଚେ ନାହିଁ ବ୍ୟଞ୍ଜନ
ରୁଚେନା ସ୍ୱାଦ ଖଜ ଭୁଣ୍ଡେରେ,
ତୋତେ ନ ଦେଖିଲେ··· ।୦।

ବନେ ଯେବେ ଯାଉ ତୁହି
ନେଉ ମୋ ଜୀବନ
ଡାକଣୀ ଗ୍ରାସିବେ କାଳେ
ବିକଳ ପରାଣ
ମୋତେ ଅଲୋଡ଼ା ବେଶ
ମୋତେ ଅଲୋଡ଼ା ବାସ
ମୋତେ ଅଲୋଡ଼ା ରସ
ମୋତେ ଅଲୋଡ଼ା ହାସ
ଅଲୋଡ଼ା କୋଟିକା ମଣି ମୁଣ୍ଡେରେ,
ତୋତେ ନ ଦେଖିଲେ··· ।୧।

ନାଚଯାଉ ଅଳ କର
ଗଛର କୋଳକୁ
ତୋଳ ମୁଁ ଧରଲେ ଗୋଳ
କରୁ ତୁ ଧୂଳକୁ
ରୁଚେନା ସରପୁଳ
ରୁଚେ ନାହିଁ ସବେଡ଼ି
ତୋର ଅଳ ଅର୍ଦ୍ଧା
ପାରେ ନା ମୁଁ ପାସୋର
ହୁଡ଼େନା ତୋ ପଥ ଗୋପ ଦାଣ୍ଡେରେ,
ତୋତେ ନ ଦେଖିଲେ··· ।୨।

—*—



Digitized by srujanika@gmail.com

## (ଛୟ୍ଲାଳଗି)

ଦୁନିଆଁରେ ତୁମଠାରୁ କିଏ ବଡ଼
ତୁମ ପରସାଦେ ଜଗତକୁ ଗଢ଼
ମୋର ମିନତି ଟିକିଏ ଶୁଣ ।୧।

ଧ୍ରୁବ ପ୍ରହଲ୍ଲାଦେ ଦେଲଟି କଷଣ
ପରିଶେଷେ ତାଙ୍କୁ ସ୍ୱର୍ଗେ ଦେଲ ସ୍ଥାନ
ସେହି ଗଉରବେ ତୁମେ ଗରୀୟାନ ।୨।

ବଡ଼ ବୋଲି ତୁମେ ଏ ଭୁବନେ ଖ୍ୟାତ
ଶ୍ରୀବତ୍ସ ବ୍ରାହ୍ମଣ କଲା ପଦାଘାତ
ଭକ୍ତ ବୋଲି ସହି କ୍ଷମିଲ ଆପଣ ।୨।

ସୁଦାମା ଦରିଦ୍ରେ ନ ଦେଖି କଷଣ
ଦର୍ପୀ ବଳୀ ନାଶି ତାଁ ଧନ ହରଣ
ଭକ୍ତେ ଦେଇ ହେଲ ଦାରିଦ୍ର୍ୟ ଭଞ୍ଜନ ।୩।

ବିବସନା କାଳେ ଦ୍ରୌପଦୀ ଜଣାଣ
ଶୁଣି ହେଲେ କରି ଲଜ୍ଜା ନିବାରଣ
ବୋଲାଇଲ ତୁମ୍ଭେ ଦୁଃଖ ବିନାଶନ ।୪।

ସେହି ଭକତଙ୍କ ନାମ କରି ଧ୍ୟାନ
ତାଙ୍କର ପଦାଙ୍କେ ଅନୁସରି ପାନ
ରବିର ବାସନା ତୁମ୍ଭ ଦରଶନ ।୫।

—※—



Digitized by srujanika@gmail.com

(ସତଗ୍ନଳଶି)

ହେ ଶ୍ରୀରାମ ଆତ୍ମାରାମ
ହେ ପୁରୁଷୋତ୍ତମ
ଭବ ରୋଗ ଶୋକ ତାପ
କର ଉପଶମ ।୧।

ଇନ୍ଦ୍ରିୟ ଭୋଗ ବିଳାସ
ଦୈହିକ କାମନା
ରୋଗ ସମ କରେ ଗ୍ରାସ
ବିଷୟ ବାସନା
ତୃଷା ଲାଳସା ସବୁର
ଘଟାଅ ବିରାମ ।୨।

ତେଜ ରାଜ ସିଂହାସନ
ସଂଭୋଗ ଯୌବନେ
ତେଜିଲ ପ୍ରିୟା ସୀତାୟା
ପ୍ରଜା ସନମାନେ
ଶୋକ ତ ନଥିଲା ମନେ
ନୟନାଭିରାମ ।୨।

ଆଦର୍ଶ ରାଜନ, ପତି
- ପୁତ୍ର ସହୋଦର
ସର୍ବଜନ ସୁଖଲାଗି
ଗଢ଼ା କଳେବର
ତାପତ୍ରୟ ବିନାଶକ
ତ୍ରିଲୋକାଭିରାମ ।୩।

—※—

 ରବୀନ୍ଦ୍ର କୁମାର ମହାପାତ୍ର

Digitized by srujanika@gmail.com

(ଅଠଗ୍ଲାଶ)

ହେ ଶ୍ରୀରାମ······ହେ ଶ୍ରୀରାମ
ନବ ନୀରଦ ବରନ
ପଦ୍ମପଲାଶ ଲୋଚନ
କୋଟି କାମ ନନ୍ଦେ ତୁମ
ରୂପର ଠାମ, ହେ ଶ୍ରୀରାମ, ହେ ଶ୍ରୀରାମ ।୧।

କ୍ଷତ୍ରୀ ବୀର ଅନବରତ
ଥିଲେ ଭୀତ ଚକିତ
କୁଠାର ଫେଡ଼ ଭୃଗୁସୁତ
ପାଦେ କରି ମଥାନତ
ଧକ୍‌କାରେ ନିଜ ବୀରତ୍ୱ
ପରଶୁରାମ, ହେ ଶ୍ରୀରାମ, ହେ ଶ୍ରୀରାମ ।୨।

କୋମଳ ତୁମର ବାଣୀ
ଶାନ୍ତ କରେ କ୍ରୋଧଅଗ୍ନି
ନୃପଘାତୀ ଭୃଗୁପତି
କ୍ଷିତି ଦେଇଥିଲା ଖ୍ୟାତି
ଧନୁ ସମର୍ପେ ତୁଷ୍ଟ ଚିତ୍ତ
ବଧି କି ବାମ, ହେ ଶ୍ରୀରାମ, ହେ ଶ୍ରୀରାମ ।୨।

କମନୀୟ ରୂପ କାନ୍ତି
ଧୀର ଅଚଞ୍ଚଳ ମତି
ଅରକ୍ଷେ ଭରି ଶକତି
ବିନାଶ କର ଦୁଷ୍କୃତି
କାହିଁ ତୁମ୍ଭ ବିନା ଗତି
ପୁରୁଷୋତ୍ତମ, ହେ ଶ୍ରୀରାମ, ହେ ଶ୍ରୀରାମ ।୩।

—*—



Digitized by srujanika@gmail.com

## (ଅଣଗୃଣ)

ପଗୃରନ୍ତ କହ୍ନାଇଁକୁ
ମାତା ଦେବକୀ
ଚଉଦ ବରଷ ପରେ
ମନେ ପଡ଼େ କି ? ।୧।

ବୁଝିଥିଲୁ ମାମୁଁ କଂସ
ହୋଇଲା କେଡ଼େ ନୃଶଂସ
ଅନ୍ଧକାରେ ବନ୍ଦୀଶାଳେ ଦେଲା ନିକ୍ଷେପି
ଶିକୁଳିରେ ଅଣ୍ଟାବାନ୍ଧି
ହସ୍ତ ପଦ ଦେଲା ଛନ୍ଦି
ପ୍ରହରୀ ଧରି ପ୍ରହାରେ କ୍ରୋଧରେ କମ୍ପି
ରଖିଲା ଭୋକ ଉପାସେ
ଛାଡ଼ିଦେଲା ସର୍ପ ପାଶେ
ଶୁଣି ଏକଥା କପରି ସହିଥିଲୁ କି ? ।୨।

ସିନ୍ଧୁ ହାସେ କାହ୍ନା ଭାଷେ
ମାତା କଇକେୟୀ ବେଶେ
ସେତାବେ ଅଯୋଧ୍ୟାପୁରେ ତୁମ ପ୍ରକାଶ
ହେଲ କେଡ଼େ ନିରଦୟ
ଅତି ନିଷ୍ଠୁର ହୃଦୟ
ଦେଲ ଚଉଦ ବରଷ ଅରଣ୍ୟବାସ
ପ୍ରାରବ୍ଧ କରମେ ସଦା
ମାନବ ଦେବତା ବନ୍ଧା
ନଭୋଗି କରମ ଫଳ କେହି ଯାଏ କି ?।୨।

—*—



*Digitized by srujanika@gmail.com*

## (ପଗ୍ଲଶ)

ରେ ମନ ବିହଗ,
ଆସେ ଝଡ଼ ଝଞ୍ଜା ବାତ୍ୟା
ହଜାଇ ଦିଗ

ଆସେ କାଳ ବଇଶାଖୀ
କିବା ଜ୍ୟେଷ୍ଠ ଅଂଶୁ ଝାଞ୍ଜି
ଆଷାଢ଼ ବିତାଶୀ ଝଡ଼
ଦାରୁଣ ଯାଗ, ରେ ମନ ବିହଗ... ।୦।
ଧୂଳି ଧୂଆଁ ବାଲିଝଡ଼
ଜଳାଏ ଆଖି

ଅନ୍ଧକାରେ ପଥ ତୋର
ନ ପାରୁ ଦେଖି

ଆହାର ବିହାର ପ୍ରତି
ତୁଟେ ସବଗ, ରେ ମନ ବିହଗ... ।୧।
ଦିଏ ଝାଳ ଠାଣଖରା
ଶୁଖଇ ତଣ୍ଟି
ଶୋଷେ ଅଠା ଧରିଯାଏ
ତୋହର ଯାଟି

ବିତାଶ ଥରାଏ ଡାଳ
କମ୍ପେ ସରଗ, ରେ ମନ ବିହଗ... ।୨।

ଭରସା କରୁ କି ତୁହି
ପାର୍ଥିବ ଡାଳ
ଫିଙ୍ଗି ଦେବ ଯାଇବୁ ନ
ତୁ ଥଳକୂଳ
ଶ୍ରଦ୍ଧା ବିଶ୍ୱାସର ଡେଣା
ତୋ ଅନ୍ତରଙ୍ଗ, ରେ ମନ ବିହଗ... ।୩।



Digitized by srujanika@gmail.com

ଶ୍ରଦ୍ଧା ବଶେ ସନ୍ତାନକୁ
କରୁ ଆଦର
ବିଶ୍ୱାସେ ପରକୁ ମଣୁ
ଭୁଲି ନିଜର
ଶରଧା ବିଶ୍ୱାସ ଭବ-
ସୁଖର ଅଙ୍ଗ, ରେ ମନ ବିହଗ··· ।୪।

—*—

## (ଏକାବନ)

ପୁଅ ଘୂରୁଛିରେ,
ବାଇଆ ବାଉଳ ହୋଇ
ବାପ ଯେ ତାହାର ରାଜ ରାଜେଶ୍ୱର
ପୁଅ ଜାଣି ନ ପାରଇ ।୦।

ସହର ଗଳିରେ ହାତପାତି ବୁଲେ
ମହଲ ମସ୍ଜିଦ ଭେଳେ
କିସ ବା ନ ଖାଏ କିସ ବା ନ କହେ
ପେଟ ଜଳୁଥାଏ ଭୋକେ
ଦେଖି ରୂପ କାନ୍ତି ପଥିକେ ଭ୍ରାନ୍ତି
ବିଧି ବିଡ଼ମ୍ବନା ଏଇ ।୧।

କେହି ଏକ ଦିନେ ଦୟାଭରି ମନେ
ଦିଏ ପେଟ ପୂରା ଅନ୍ନ
ତହିଁ ଆର ଦିନ ଆଉ କେଉଁ ଜନ
ଦିଏ ଖଣ୍ଡିଏ ବସନ
ଆଉ ଦିନେ କେହି ବୋଲେ ଯାଅ କାହିଁ
ମୋ ପିଣ୍ଡାରେ ପଡ଼ି ଶୋଇ ।୨।



Digitized by srujanika@gmail.com

ଅନ୍ତିମ ବୟସେ ଆଜି ଜଣେ ଘଟେ
ଏତ ହିରାଲାଲ୍ ପୁତ୍ର
ଆମ ସହରର ସେଠ ଧମୀକର
ସନ୍ତାନ ସେ ଏକ ମାତ୍ର
ଉଦାର ସେ ନର ଧରି ପୁତ୍ର କର
ଜନକ ପାଶେ ମିଳଇ ।୩।

ଧରି ପୁତ୍ର କୋଳେ ପିତା ଲୁହ ଢାଳେ
ବନ୍ଧୁଙ୍କୁ କରେ ବନ୍ଦନ
ହଜିଥିଲା ଯେଉଁ ସ୍ମୃତି ଶକ୍ତି କାହୁଁ
ଫେରି ପାଇଲା ସନ୍ତାନ
ଅନ୍ନ ବାସ ବସ୍ତ୍ର ଦିନକ ନୁହେଁ ତ
ମିଳେ ଚିରଦିନ ପାଇଁ ।୪।

ସଂସାର ମୋହରେ ବିସ୍ମୃତ ଆମେରେ
ନିଜ ସ୍ମୃତି ପରିଚିତ
କୃପାମୟ ଗୁରୁ ଅସୀମ ଦୟାରୁ
ପିତାଙ୍କ ପାଶେ ମିଳାନ୍ତି
ଅଳୀକତା ଯହିଁ ଯାଏ ଲୋପ ପାଇ
ଚିର ଆନନ୍ଦ ମିଳଇ ।୫।

—*—



Digitized by srujanika@gmail.com

( ଭାଉନ )

ରେ ମାନବ······
ପ୍ରେମ ବିନା ତ୍ୟାଗ
କି ସମ୍ଭବ
ଛଳରେ କି ଥାଏ
ପ୍ରୀତିଭାବ ।୦।

ମନୁ କପଟ ତେଜ
ଭେଦଭାବ ବରଜ
ସକଳ ଘଟେ ମଜ୍ଜି
ଦେଖ ବରଜରାଜ
ସର୍ବ ତଜ ବିଭ୍ର
ଅବଧୂତ ।୧।

ତ୍ୟାଗ ବିଜ୍ଞାନ ମତି
ତୁଟାଏ କି ଆସକ୍ତି
ଚଞ୍ଚଳ ଚିତ୍ତବୃତ୍ତି
କରେ ମନ ଅଶାନ୍ତ
ବାସନା ତୋ ଇନ୍ଦ୍ର
ଅନୁଭବ ।୨।

ବିଷୟାସକ୍ତି ଦେହ
ନ ଗଲେ ଜ୍ଞାନ କାହିଁ
ଜ୍ଞାନୁ ଭକତି ପାଇ
ନିଶ୍ଚିତ ମୁକ୍ତି ତହିଁ
କରୁ ତୁ ବିବ୍ୟ
ସୁଖଲଭ ।୩।

—*—



Digitized by srujanika@gmail.com

## (ତେପନ)

ବୋହୂ ବୁଝି ନ ପାରଇଟି
ଶାଶୁଠୁଁ ଶୁଣେ ଗଞ୍ଜଣା
ଯେତେବେଳେ ବୋହୂ ଗୁମର ବୁଝିବ
ନ ହୋଇବ ବାଟବଣା ।୦।

ଶାଶୁ ବଖାଣଇ ବୋହୂ ବଦଗୁଣ
ନିତି ଖାଇଯାଏ ଘିଅ
ଯତନେ ସାଇତେ ପଳେ ଦୁଇପଳ
ଲୁଚେଇ ଖାଏ ସେ ଝିଅ
ଭାଇ ଆସି ଶୁଣି ଭଗ୍ନୀକୁ ଡାଆରେ
ନାହିଁ କ ଉପାୟ ଜଣା,
ବୋହୂ ବୁଝି ନ ପାରଇଟି··· ।୧।

ଖାଇବୁନ କେବେ ଘିଅ କ ଲହୁଣୀ
ଶାଶୁ କରଇ ଲୋକସ୍ତ
ସିଝା କ୍ଷୀର ଯେତେ ପିଇଲେ ତୁ ସତେ
ନ କରେ ବାରଣ ପରା
କ୍ଷୀର ମଧ୍ୟେ ଅଛି ସର ବା ଲହୁଣୀ
ପୁଣି ଦହି ଘିଅ ଛେନା,
ବୋହୂ ବୁଝି ନ ପାରଇଟି··· ।୨।

ଧନ ଜନ ମାନ ବସନ ଭୂଷଣେ
ରଖିବୁନ ତୁ ଲାଳସା
ସଂସାର ବରବ ନହୁଏ ଅଭାବ
ପ୍ରଭୁଙ୍କୁ କଲେ ଭରସା
ପ୍ରଭୁକୃପା ଏକା ଇଚ୍ଛା କଳ୍ପତରୁ
ସର୍ବ ଅଇଶ୍ୱର୍ଯ୍ୟ ଗଣା,
ବୋହୂ ବୁଝି ନ ପାରଇଟି··· ।୩।

—※—



Digitized by srujanika@gmail.com

( ଚଉବନ )

ବନ୍ଧୁରେ···ବନ୍ଧୁରେ···
ସୁମରିଲେ ନାମ ଯା'ର
କୁସୁମ ବରଷେ
ଚାଲିଲେ ଭୂଇଁରେ ଯିଏ
ସରୋଜ ବିକଶେ ।୦।

ଶକତି ଯାହାର ରାଜେ
ଅନିଳ ନିଶ୍ୱାସେ
ଶଶୀ ତାରା ଯା' ନୟନେ
ଶୋଭନ୍ତି ଆକାଶେ
ଯାହା ସେବା ଲାଗି ରବି
ଆଲୋକ ପ୍ରକାଶେ,
ସୁମରିଲେ ନାମ ଯା'ର··· ।୧।

ଗୁଣକୁ ଦେଖିଲେ ଯିଏ
ପୀୟୂଷ ବରଷେ
ତନୁ ମନ ପୁଲକିତ
ଯାହାର ପରଶେ
ଛୁଇଁଲେ ରତନ ଥରେ
ହୃଦକୁ ପୂରୁଷେ,
ସୁମରିଲେ ନାମ ଯା'ର··· ।୨।

ଜଗତ ଯିବଲେ ପର
କେ ଆସେ ତୋ ପାଶେ
ବଚନ ମଧୁର ଭାଷି
ପିଠିକୁ ଆଉଁସେ
ଗାଇବୁ ତା' ନାମ ସଦା
ଜୀବନେ ହରଷେ,
ସୁମରିଲେ ନାମ ଯା'ର··· ।୩।

—*—



Digitized by srujanika@gmail.com



**ଶ୍ରୀ ରବୀନ୍ଦ୍ର କୁମାର ମହାପାତ୍ର, ଓ.ଇ.ଏସ୍.**

**ବରିଷ୍ଠ ଅଧ୍ୟାପକ, ତର୍କ ଓ ଦର୍ଶନ ବିଭାଗ**

ଜନ୍ମ: ତା ୧୫.୩.୧୯୫୬ରିଖ । କଟକ ଜିଲ୍ଲା ଗୋବିନ୍ଦପୁର ଥାନା ଅନ୍ତର୍ଗତ ଗୋପାଳନଗର ଗ୍ରାମ ।

ପିତା : ଶ୍ରୀ କାମଦେବ ମହାପାତ୍ର, ମାତା : ଶ୍ରୀମତୀ ଶୁକଲତା ମହାପାତ୍ର ।

ଶିକ୍ଷା : ଗ୍ରାମ ସ୍କୁଲରୁ ପ୍ରାଇମେରୀ ପାଠ୍ୟ ସମାପ୍ତ କରି ନିକଟସ୍ଥ ଜନତା ବିଦ୍ୟାପୀଠ, କୃଷ୍ଣନପୁର, ନୋଦା, କଟକରୁ ୧୯୭୩ ମସିହାରେ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ, ୧୯୭୫ରେ 'ରେଭେନ୍ସା ମହାବିଦ୍ୟାଳୟରୁ ଆଇ.ଏ., ୧୯୭୭ରେ ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀରୁ ବି.ଏ., ୧୯୭୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାରରୁ ଏମ୍.ଏ. ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ, ୧୯୮୯ ମସିହାରେ ପୁନା ବିଶ୍ୱବିଦ୍ୟାଳୟରୁ ଏମ୍.ଫିଲ୍. ଡିଗ୍ରୀ ହାସଲ ।

ବୃତ୍ତି : ତର୍କ ଓ ଦର୍ଶନଶାସ୍ତ୍ର ବିଭାଗରେ ଅଧ୍ୟାପନା । ୧୯୮୦ରୁ ଓଡ଼ିଶା ଶିକ୍ଷା (କଲେଜ ଶାଖା) ସେବାଭୁକ୍ତ ହୋଇ ବିଭିନ୍ନ ସରକାରୀ କଲେଜ୍‌ରେ ଶିକ୍ଷାଦାନ କରିବା ପରେ ସଂପ୍ରତି ଢେଙ୍କାନାଳ ସରକାରୀ ମହାବିଦ୍ୟାଳୟରେ ଅବସ୍ଥାପିତ ।

ଲେଖକ ଜୀବନ :

ଛାତ୍ରାବସ୍ଥାରୁ ଲେଖନୀ ଚାଳନାରେ ଆଗ୍ରହ । ପତ୍ରପତ୍ରିକାରେ ଲେଖା ପ୍ରକାଶ ଆରମ୍ଭ ୧୯୭୫ ମସିହାରେ । ଦେଶାତ୍ମବୋଧକ, ଆଧ୍ୟାତ୍ମିକ ଓ ଭକ୍ତିଚେତନା ସମ୍ବଳିତ ଗୀତିକବିତା ରଚନାରେ ଲେଖନୀ ଚଳଚଞ୍ଚଳ । ଏତଦ୍‌ଭିନ୍ନ ବିଭିନ୍ନ ଦାର୍ଶନିକ ଓ ଚିନ୍ତା ଚେତନା ଉଦ୍ରେକକାରୀ ପ୍ରବନ୍ଧ ରଚନାରେ ମଧ୍ୟ ସିଦ୍ଧହସ୍ତ । **ଭକ୍ତି ଗୀତିକା** ହେଉଛି କବିଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ ।

ବର୍ତ୍ତମାନ ଠିକଣା :

ସା : କାଠଗଡ଼ା, ପୋ:ଅ:/ଜି: ଢେଙ୍କାନାଳ, ଫୋନ ନଂ - ୩୨୧୪୦

Digitized by srujanika@gmail.com